## ଅଖିଳ ଭାରତ କୃଷକ ସଭାର ବୈପ୍ଳବିକ ଶ୍ରଦ୍ଧାଞ୍ଜଳି



ସାଥୀ ବିଶ୍ୱନାଥ ସାହୁ

ଜନ୍ମ : ୧୨ ଜୁଲାଇ ୧୯୨୫     ମୃତ୍ୟୁ : ୧୮ ମାର୍ଚ୍ଚ ୨୦୧୭

*Com. Biswanath Sahoo, a veteran leader of Kishans and down trodden sections of Odisha, was a popular legislator and leader of Communist movement. He lead many struggles and dedicated his life to Red Flag. Soft spoken but strong in class struggles, simple living, loved by comrades.*

*My Red Salute to Comrade Biswanath Sahoo.*

S. Sudhakar Reddy

S. Sudhakar Reddy
Gen' Secy. CPI

*My deepest condolences and Lal Salam to Com. Biswanath Sahu. A veteran communist leader Com Sahu devoted his whole life to advance the revolutionary movement in Odisha and in the country*

*My sincere condolences to all comrades and comrade Sahu's family.*

Sitaram Yechury
Gen' Secy. CPI(M)

*All India Kisan Sabha dips its flag and salutes the departed leader and conveys its heartfelt condolences to the bereaved family members, AIKS members and party comrades. Com. Biwanath Sahu will remain in our hearts.*

*The veteran of many Kisan struggles in Odisha AIKS leader Com Biwanath Sahu will always remain as an Icon for masses on struggling path. The leaders in public life can learn a lot from his simplicity, committment, boldness to put his views and always with marginalisied over whelming majority of our people.*

*Atul Kumar Anjan*
*General Secretary AIKS.*

SHRI NARASINGHA MISHRA
Leader of Opposition
Odisha Legislative Assembly



Phone | Assembly : (0674) 2536913
EPABX
Res. : (0674) 2534426
Email - leader of opposition olaodisha@gmail.com

D. O. No. . . ................/LOP

BHUBANESWAR

Date

## CONDOLENCE MESSAGE

*I am filled with sorrow and grief at the sad demise of Sri Biswanath Sahu, Ex-MLA. I was associated with him since my college days. He was a champion of the farmers' cause. He worked tirelessly for the upliftment of the poor and downtrodden.*

*My deepest condolences and grief at the sad demise.*

(Narasingha Mishra)

# ଶୋକ ବାର୍ତ୍ତା

କମ୍ରେଡ ବିଶ୍ୱନାଥ ସାହୁ ଲାଲ ସଲାମ । କମ୍ରେଡ ବିଶ୍ୱନାଥ ସାହୁଙ୍କ ବିୟୋଗରେ ସିପିଆଇ(ଏମ୍) ଓଡ଼ିଶା ରାଜ୍ୟ କମିଟି ପକ୍ଷରୁ ଗଭୀର ଶୋକ ପ୍ରକାଶ କରୁଛି । ବିଶ୍ୱନାଥ ବାବୁଙ୍କ ଆମ ସଂପର୍କ ଦୀର୍ଘ ୪ ଦଶନ୍ଧୀରୁ ଉର୍ଦ୍ଧ୍ୱ । ତାଙ୍କରି ବିୟୋଗରେ ଓଡ଼ିଶା ରାଜ୍ୟ ଜଣେ ଟାଣୁଆ ଓ ଲଢୁଆ ନେତାଙ୍କୁ ହରାଇଲା । ମେହନତୀ ମଣିଷ, ଚାଷୀ, ମୁଲିଆଙ୍କର ପ୍ରୀୟ ଓ ସହଯୋଦ୍ଧା ରୂପେ ପରିଚିତ ବିଶ୍ୱନାଥ ବାବୁଙ୍କ ଅମର ସ୍ମୃତି ଆମ ସମସ୍ତଙ୍କୁ ଆଗକୁ ମାଡିଯିବାକୁ ଏବଂ ତାଙ୍କ ଅପୁରଣୀୟ କାର୍ଯ୍ୟକୁ ସମାପନ କରିବା ନିମନ୍ତେ ପ୍ରେରଣା ଯୋଗାଇବ ।

**ଅଲି ପଟ୍ଟନାୟକ**

ସଂପାଦକ ସିପିଆଇ (ଏମ୍) ଓଡ଼ିଶା ରାଜ୍ୟ କମିଟ

ଶ୍ରୀଯୁକ୍ତ ବିଶ୍ୱନାଥ ସାହୁଙ୍କ ବିୟୋଗରେ ଓଡ଼ିଶାର ଗରିବ, ଖଟିଖିଆ ଶ୍ରମଜୀବୀ ମଣିଷମାନେ ତାଙ୍କର ଜଣେ ସଂଗ୍ରାମୀ ସାଥୀଙ୍କୁ ହରାଇଲେ ।

**ରବି ବେହେରା**

ସଭାପତି, ସମାଜବାଦୀ ପାର୍ଟି

ବିଶ୍ୱନାଥ ସାହୁଙ୍କ ଅବର୍ତ୍ତମାନ ଓଡ଼ିଶାର  ଗଣ ଆନ୍ଦୋଳନ ପାଇଁ ଏକ ଶକ୍ତ ଧକ୍କା । ତାଙ୍କ ତ୍ୟାଗପୂତ ଜୀବନ ଆମ ସମସ୍ତଙ୍କର ପାଇଁ ଏ ପ୍ରେରଣାର ଉତ୍ସ । ମାର୍କ୍ସବାଦରେ ତାଙ୍କର ବିଶ୍ୱାସ ଏବଂ ସେ ଦିଗରେ ଜୀବନ ତମାମ ସଂଗ୍ରାମ ଓ ସାଧନା ଓଡ଼ିଶା କମ୍ୟୁନିଷ୍ଟ ଆନ୍ଦୋଳନରେ ଏକ ଉଦାହରଣ ହୋଇ ରହିବ ।

ତାଙ୍କ ପ୍ରତି ମୋର ଗଭୀର ଶଦ୍ଧାଞ୍ଜଳି ।

**ସୁଦର୍ଶନ ଦାସ**

ସ୍ୱର୍ଗତ ବିଶ୍ୱନାଥ ସାହୁ ମୋର ରାଜନୈତିକ ଗୁରୁ ତଥା ପରାମର୍ଶଦାତା ଥିଲେ । ତାଙ୍କ ବିୟୋଗରେ ସମଗ୍ର ଚଷୀକୁଳର କ୍ଷତି ହେଲା । ଏହି କ୍ଷତି ଆଗାମୀ ଅନେକ ଦିନ ପର୍ଯ୍ୟନ୍ତ ପୂରଣ ହୋଇ ପାରିବ ନାହିଁ । ତାଙ୍କ ବିୟୋଗରେ ମୋର ଗଭୀର ଶ୍ରଦ୍ଧାଞ୍ଜଳି ଜଣାଉଛି ।

**ତ୍ରିନାଥ ବେହେରା**

ପୂର୍ବତନ ବିଧାୟକ, ଗୋପାଳପୁର(ଗଂଜାମ)



# ALL ODISHA FEDERATION OF TEACHERS' ORGANISATIONS
# ନିଖିଳ ଉତ୍କଳ ଶିକ୍ଷକ ମହାସଂଘ



## ନିଖିଳ ଉତ୍କଳ ଶିକ୍ଷକ ମହାସଂଘ ପକ୍ଷରୁ ସ୍ୱର୍ଗତ ବିଶ୍ୱନାଥ ସାହୁଙ୍କ ପ୍ରତି ଅଶ୍ରୁଳ ଶ୍ରଦ୍ଧାଞ୍ଜଳି

ବିଶ୍ୱନାଥ ସାହୁ ଜଣେ ଅମାୟିକ ବ୍ୟକ୍ତିତ୍ୱ, ମିଷ୍ଟଭାଷି ଓ ମେଳାପି ବ୍ୟକ୍ତି ଥିଲେ । ତାଙ୍କର ସମାଜବାଦି ଚିନ୍ତାଧାରା, ଋଷି, ମୂଲତଆ, ଖଟିଖିଆଙ୍କ ପ୍ରତି ଦରଦ ତାଙ୍କୁ ଅମର କରି ରଖିବ । ଶିକ୍ଷା, ଶିକ୍ଷାୟତନ ଓ ଶିକ୍ଷକଙ୍କ ଉନ୍ନତି ପାଇଁ ତାଙ୍କର ଅବଦାନ ଅବିସ୍ମରଣୀୟ । ତାଙ୍କର ମୃତ୍ୟୁରେ ନିଖିଳ ଶିକ୍ଷକ ମହାସଂଘ ଜଣେ ଦରଦୀ ସାଥିଙ୍କୁ ହରାଇଲା । ତାଙ୍କର ମୃତ୍ୟୁରେ ଋଷି, ମୂଲିଆ, ଖଟିକିଆ, ସର୍ବୋପରି ସମାଜ ବାଦୀ ଆନ୍ଦୋଳନରେ ଏକ ଶୂନ୍ୟସ୍ଥାନ ସୃଷ୍ଟି ହେଲା । ଏହି ଅବସରରେ ନିଖିଳ ଉତ୍କଳ ଶିକ୍ଷକ ମହାସଂଘର ଅଗଣିତ ସଭ୍ୟ ଓ ସଭ୍ୟା ମାନଙ୍କ ପକ୍ଷରୁ ଗଭିର ଶ୍ରଦ୍ଧାଞ୍ଜଳି ଜ୍ଞାପନ କରୁଛି ଓ ତାଙ୍କ ଅମର ଆତ୍ମାର ସଦଗତି କାମନା କରୁଛି ।

ଅଧ୍ୟାପକ ରବି ରାୟ
ସାଧାରଣ ସଂପାଦକ
ନିଖିଳ ଉତ୍କଳ ଶିକ୍ଷକ ମହାସଂଘ

# ବିଶ୍ୱନାଥ ସାହୁ ଲାଲ୍ ସଲାମ୍

**ଦିବାକର ନାୟକ**

ମାର୍ଚ୍ଚ ୧୮ ତାରିଖ ରାତି ଗୋଟାଏ ପାଖାପାଖି ହେବ । ଭଗବତୀ ଭବନର ମୋ ରୁମ୍‌ରେ ମୁଁ ଶୋଇଥାଏ । ଶୋଇଥାଏ ମାନେ ନିଦ ଆସି ନ ଥାଏ, କିନ୍ତୁ ବିଛଣାରେ ପଡ଼ିଥାଏ । ରାତି ପାହିଲେ ୫ଟି ବାମପନ୍ଥୀ ଦଳର ମିଳିତ ରାଲି । ୧୯୯୪ରେ ଏଭଳି ମିଳିତ ସମାବେଶ ଅନୁଷ୍ଠିତ ହୋଇଥିଲା । ଦୀର୍ଘ ୨୨ ବର୍ଷ ପରେ ପୁଣି ଅନୁଷ୍ଠିତ ହେଉଛି । ପରିସ୍ଥିତି ଭିନ୍ନ । ଏହି ସମୟରେ ବାଟରେ ଠକ୍ ଠକ୍ ଶୁଭିଲା । ମୁଁ ଡାକିଲି ରାଲି ପାଇଁ ଆସୁଥିବା କୌଣସି କମ୍ରେଡ ବୋଧହୁଏ ଭୁଲ୍‌ରେ ମୋ କବାଟ ବାଡ଼ାଉଛି । ନାଁ, କବାଟ ଖୋଲିଲି - ରମେଶ ବାବୁ (ଅଫିସ ସଂପାଦକ ରମେଶ ଚନ୍ଦ୍ର ପାଢ଼ୀ) ସାମ୍ନାରେ ଠିଆ ହୋଇଛନ୍ତି । କହିଲେ - ବିଶ୍ୱନାଥ ବାବୁ ୧୧.୨୦ରେ ଚାଲିଗଲେ, ତାଙ୍କ ପୁଅ ବିଘ୍ନି ମୋତେ ଫୋନ୍‌ରେ ମେସେଜ୍ କରି କହିଲା । ଏ ସମ୍ବାଦ ଶୁଣି ମୁଁ ଥମ୍ କରି ସେଠାରେ ପଡ଼ିଥିବା ଚେୟାର ଉପରେ ବସି ପଡ଼ିଲି । ବିଶ୍ୱନାଥ ବାବୁଙ୍କ ମୃତ୍ୟୁ ସମ୍ବାଦ ଅତ୍ୟନ୍ତ ଅସ୍ୱାଭାବିକ ନ ଥିଲେ ବି, ଆକସ୍ମିକ ଓ ଦାରୁଣ ଦୁଃଖଦାୟକ ଥିଲା । ତାଙ୍କର ଜନ୍ମ ଓ ଭାରତରେ କମ୍ୟୁନିଷ୍ଟ ପାର୍ଟିର ଜନ୍ମ ଗୋଟିଏ ମସିହାରେ - ୧୯୨୫ । ଗତ ଡ଼ିସେମ୍ବର ୨୬ ତାରିଖ ଦିନ ଭୁବନେଶ୍ୱର ଲୋୟର ପିଏମଜିଠାରେ ପାର୍ଟିର ୯୦ତମ ବାର୍ଷିକୀ ପାଳନ ବେଳେ ତାଙ୍କୁ ସମ୍ବର୍ଦ୍ଧିତ କରାଯିବାର ଥିଲା, ମାତ୍ର ଅସୁସ୍ଥତା ଯୋଗୁଁ ସେ ଆସି ପାରିନଥିଲେ । ତାଙ୍କ ମାନପତ୍ର ପଠାଇ ଦିଆଯାଇଥିଲା । ତାର ୧୫/୨୦ ଦିନ ପୂର୍ବରୁ ମୁଁ, ନାରାୟଣ ରେଡ଼ି ଓ ରାମକୃଷ୍ଣ ପଣ୍ଡା ତାଙ୍କ ଝିଅ ଘରକୁ ଯାଇ ତାଙ୍କୁ ସାକ୍ଷାତ କରିଥିଲୁ । ସେହି ଦିନ ସେ କଳିଙ୍ଗ ହସ୍ପିଟାଲରୁ ଡିସ୍‌ଚର୍ଜ୍ ହୋଇ ଆସିଥିଲେ । ଦୁତୀକୃଷ୍ଣ ପଣ୍ଡା ଉପରକୁ ଉଠିନପାରି ତଳେ ଅପେକ୍ଷା କରି ଆମ ସାଥୀରେ ଫେରିଥିଲେ । ଏଣୁ ମୁଁ ଭାବିଥିଲି ଆଉ କିଛି ଦିନ ପରେ ବିଶ୍ୱନାଥ ବାବୁ ଭଲ ହୋଇ ପୁଣି ଭଗବତୀ ଭବନକୁ ଆସିବେ । ଏଣୁ ତାଙ୍କ ମୃତ୍ୟୁ ସମ୍ବାଦ ମୋ ପାଇଁ ଅପ୍ରତ୍ୟାଶିତ ଥିଲା । ସଙ୍ଗେ ସଙ୍ଗେ କ'ଣ କରିବାକୁ ହେବ ସ୍ଥିର କରି ନ ପାରି ଫୋନରେ ଆଶିଷ ବାବୁ, ରାମ, ନାରାୟଣ ରେଡି ଓ ଗଞ୍ଜାମ ଜିଲ୍ଲା ସଂପାଦକ ପ୍ରକାଶ ପାତ୍ରଙ୍କ ସହିତ ଏବଂ ବିଶ୍ୱନାଥ ବାବୁଙ୍କ ପୁଅ ବିଘ୍ନରାଜ ସହିତ କଥା ହେଲି । ଗଞ୍ଜାମ ଜିଲ୍ଲାର ସମସ୍ତ ନେତୃ ସ୍ଥାନୀୟ ସାଥୀ ସକାଳୁ ରାଲୀରେ ଯୋଗ ଦେବା ପାଇଁ ଭୁବନେଶ୍ୱର ଆସୁଥିବାରୁ ଏବଂ ସମଗ୍ର ଓଡିଶାର ସାଥୀମାନେ ସମବେତ ହେଉଥିବାରୁ ଆମ ସମସ୍ତଙ୍କର ମତଥିଲା ବିଶ୍ୱନାଥବାବୁଙ୍କ ମରଶରୀରକୁ ଗଞ୍ଜାମର ବଡକୁଶସ୍ଥଳୀରୁ ଭୁବନେଶ୍ୱର ନେଇ ଆସିବା, ଯାହାଫଳରେ ସମଗ୍ର ରାଜ୍ୟର ସାଥୀମାନେ ସେମାନଙ୍କର ପ୍ରିୟ ନେତାଙ୍କ ପ୍ରତି ଶେଷ ସମ୍ମାନ ଜଣାଇପାରିବେ । ପ୍ରାୟ ୧୦ ମିନଟପରେ ପ୍ରକାଶ ପାତ୍ର ଜଣାଇଲେ– ତାଙ୍କ ପୁଅ ଓ ପରିବାରର ସମସ୍ତେ ରାଜି, କାଲି ସକାଳୁ ମରଶରୀର ଭଗବତୀ ଭବନ କହଞ୍ଚିବ ।

ବିଶ୍ୱନାଥବାବୁଙ୍କ ମର ଶରୀର ଭଗବତୀ ଭବନରେ ପହଞ୍ଚିଲା ବେଳକୁ ଏଠାରେ ଲୋକାରଣ୍ୟ । ଏହି ଦୁଃଖଦ ସମ୍ବାଦ ସମସ୍ତଙ୍କ ପାଖରେ ପହଞ୍ଚିସାରିଥିବାରୁ ରାଲିରେ ଯୋଗଦେବା ପାଇଁ ଆସିଥିବା ସାଥୀମାନେ ବିଭିନ୍ନ ଜିଲ୍ଲାରୁ ଦଳଦଳ ହୋଇ ଆସି ଶେଷ ଦର୍ଶନ କରୁଥାଆନ୍ତି । କେବଳ ସିପିଆଇ ନୁହେଁ, ସିପିଆଇ(ଏମ୍), ସିପିଆଇ(ଏମ୍‌ଏଲ୍) ଲିବେରେସନ, ଏସୟୁସିଆଇ, ଫରୱାର୍ଡ ବ୍ଲକ, ବିଜେଡି, କଂଗ୍ରେସ ଓ ସମାଜବାଦୀ ପାର୍ଟିର

ନେତାମାନେ ମଧ୍ୟ ପୁଷ୍ପମାଲ୍ୟ ଅର୍ପଣ କଲେ । ରାଲିରେ ଯୋଗ ଦେବା ପାଇଁ ପୂର୍ବଦିନରୁ ସିପିଆଇର ସାଧାରଣ ସମ୍ପାଦକ କମ୍ରେଡ ଏସ. ସୁଧାକର ରେଡ୍ଡି ଓ ସିପିଆଇ(ଏମ୍)ର ସାଧାରଣ ସମ୍ପାଦକ କମ୍ରେଡ ସୀତାରାମ ୟେଚୁରୀ ଭୁବନେଶ୍ୱରରେ ପହଞ୍ଚିଥାଆନ୍ତି । ଏଣୁ ଯେତେବେଳେ ଦୁଇ ପାର୍ଟିର ସାଧାରଣ ସମ୍ପାଦକ ବିଶ୍ୱନାଥ ବାବୁଙ୍କ ମର ଶରୀର ଉପରେ ପୁଷ୍ପମାଲ୍ୟ ଅର୍ପଣ କଲେ ସେତେବେଳେ ମୋ ଆଖିରୁ ଲୁହ ବହିଆସିଲା । କମ୍ରେଡ ବିଶ୍ୱନାଥ ସାହୁ ହିଁ ଓଡ଼ିଶାର କମ୍ୟୁନିଷ୍ଟ ଆନ୍ଦୋଳନର ଏକମାତ୍ର ନେତା, ଯାହାଙ୍କ ଶବାଧାରରେ ଉଭୟ ସିପିଆଇ, ସିପିଆଇ(ଏମ୍)ର ସାଧାରଣ ସମ୍ପାଦକ ପୁଷ୍ପ ଅର୍ପଣ କରୁଛନ୍ତି । ଏଭଳି ଭାଗ୍ୟ ହୁଏତ ଅନ୍ୟ କାହାରିକୁ ମିଳି ନ ପାରେ ।

ବିଶ୍ୱନାଥ ସାହୁ, ଓଡ଼ିଶାର କମ୍ୟୁନିଷ୍ଟ ଓ କୃଷକ ଆନ୍ଦୋଳନର ଅନ୍ୟତମ ମହାରଥୀ । ହାଇସ୍କୁଲରେ ପଢୁଥିବା ସମୟରେ ଭାରତ ଛାତ୍ର ଆନ୍ଦୋଳନ ଦ୍ୱାରା ପ୍ରଭାବିତ ହୁଅନ୍ତି ତରୁଣ ବିଶ୍ୱନାଥ ଏବଂ ୧୯୪୪ ମସିହାରେ ଭାରତବର୍ଷର ସର୍ବ ପ୍ରଥମ ଛାତ୍ର ସଂଗଠନ ଅଖିଳ ଭାରତ ଛାତ୍ର ସଂଘରେ ଯୋଗ ଦିଅନ୍ତି । ବ୍ରହ୍ମପୁରସ୍ଥିତ ଖଲ୍ଲିକୋଟ କଲେଜର ଛାତ୍ର ଥିବାବେଳେ ଏଆଇଏସଏଫର ଜିଲ୍ଲା ସମ୍ପାଦକ ଦାୟିତ୍ୱ ନେଇ ଛାତ୍ର ନେତା ଭାବେ ଉଭା ହୁଅନ୍ତି । ତାଙ୍କ ମୁହଁରୁ ମୁଁ ଶୁଣିଛି ଗୋଆ ମୁକ୍ତି ସଂଗ୍ରାମରେ ସ୍ୱେଚ୍ଛାସେବକ ହୋଇ ସେ ବମ୍ବେ ଯାଇଥିଲେ । ବମ୍ବେରୁ ଗୋଆ ଯିବା ରାସ୍ତାରେ ସ୍ୱେଚ୍ଛାସେବୀ ସଂଗ୍ରାମୀମାନଙ୍କ ଉପରେ ବମ୍ବେ ପୋଲିସ ଲାଠି ମାଡ଼ କଲା । ସେଇ ଲାଠିମାଡ଼ରେ ଓଡ଼ିଶାର ନିରୂପମା (ପରବର୍ତ୍ତୀ ସମୟରେ ଡାକ୍ତର ନିରୂପମା ରଥ)ଙ୍କ ସମେତ ଅନେକ ଛାତ୍ରଛାତ୍ରୀ ଆହତ ହୋଇଥିଲେ । ବିଶ୍ୱନାଥ ସାହୁଙ୍କର ପତ୍ତା ମିଳିଲା ନାହିଁ । ପ୍ରଚାର ହୋଇଗଲା– ବିଶ୍ୱନାଥ ମୃତ ଓ ତାଙ୍କ ଶବକୁ ଇଂରେଜ ସରକାର ଗାଏବ କରିଦେଇଛନ୍ତି ! ଏହି ମୃତ୍ୟୁ ସମ୍ବାଦରେ ବ୍ରହ୍ମପୁରରେ କୁଆଡ଼େ ଛାତ୍ରସଂଘ ପକ୍ଷରୁ ଏକ ଶୋକସଭା ଅନୁଷ୍ଠିତ ହୋଇଥିଲା । କିନ୍ତୁ ଶୋକସଭା ପରେ ହଠାତ୍ ବିଶ୍ୱନାଥ ସାହୁ, ବ୍ରହ୍ମପୁରରେ ପହଞ୍ଚନ୍ତି ଏବଂ ଛାତ୍ର ମହଲରେ ଆନନ୍ଦର ଲହରି ଖେଳିଯାଏ ।

୧୯୪୮ ମସିହାରେ ବିଶ୍ୱନାଥ ବାବୁ ଯୋଗ ଦିଅନ୍ତି କମ୍ୟୁନିଷ୍ଟ ପାର୍ଟିରେ । ସେତେବେଳେ କମ୍ୟୁନିଷ୍ଟ ପାର୍ଟି ବେଆଇନ । ଅଜ୍ଞାତବାସର ସେଇ ଅଗ୍ନି ଯୁଗରେ ଯୁବକ ବିଶ୍ୱନାଥ ପାର୍ଟିର ଗୁପ୍ତ ଖବର ନେବା ଆଣିବା କାର୍ଯ୍ୟ କରନ୍ତି ଏବଂ ୧୯୪୯ରେ ଧରାପଡ଼ି ଜେଲ୍ ଯାଆନ୍ତି । ଜେଲ୍‌ରେ ରୁହନ୍ତି ୩ ବର୍ଷ । ୧୯୫୨ରେ କମ୍ୟୁନିଷ୍ଟ ପାର୍ଟି ଆଇନସମ୍ମତ ହେବା ପରେ ଯାଇ ସେ ଖଲାସ ହୁଅନ୍ତି । ସ୍ୱାଧୀନତା ପରେ ମଧ୍ୟ କମ୍ୟୁନିଷ୍ଟ ଓ କୃଷକ ଆନ୍ଦୋଳନରେ ଯୋଗ ଦେଇ ୭ବର୍ଷ ୮ମାସ ଜେଲ୍‌ରେ କଟାଇ ୧୯୫୮ରେ ବିଶ୍ୱନାଥ ସାହୁ ଗଞ୍ଜାମ ଜିଲ୍ଲା କମ୍ୟୁନିଷ୍ଟ ପାର୍ଟିର ସମ୍ପାଦକ ନିର୍ବାଚିତ ହୁଅନ୍ତି ଏବଂ ଏହି ପଦବୀରେ ଦୀର୍ଘ ୨୪ ବର୍ଷ ରୁହନ୍ତି । ସେତେବେଳେ ଗଞ୍ଜାମ ଜିଲ୍ଲା ପାର୍ଟିର ଗଣ ଭିତ୍ତି ଖୁବ୍ ବ୍ୟାପକ । ଏଭଳି ବ୍ୟାପକତା ଭିତ୍ତି ସମ୍ପନ୍ନ ଗଞ୍ଜାମ ଜିଲ୍ଲା ପାର୍ଟିର ସମ୍ପାଦକ ୨୪ ବର୍ଷ ରହିବା ସାମାନ୍ୟ କଥା ନୁହେଁ । ଏଥିରୁ ଜଣାପଡ଼େ ତାଙ୍କର ସାଙ୍ଗଠନିକ ଦକ୍ଷତା କେତେ । ଜରୁରିକାଳୀନ ଅବସ୍ଥା ବା ଏମରଜେନ୍ସି ପରେ ୧୯୭୭ ମସିହା ନିର୍ବାଚନରେ ବିଶ୍ୱନାଥ ବାବୁ ଛତ୍ରପୁର ବିଧାନସଭା ଆସନରୁ ସିପିଆଇ ବିଧାୟକ ଭାବେ ନିର୍ବାଚିତ ହୁଅନ୍ତି । ତା' ପୂର୍ବରୁ ସବୁବେଳେ ସିପିଆଇର ୪/୫ଜଣ ବିଧାୟକ ନିର୍ବାଚିତ ହେଉଥିଲେ । କିନ୍ତୁ ୧୯୭୭ରେ ସେ ଏକମାତ୍ର ବିଧାୟକ । ୧୯୮୦ରେ ପୁଣି ସେ ଦ୍ୱିତୀୟ ଥର ପାଇଁ ନିର୍ବାଚିତ ହୋଇଥିଲେ । ଅନେକ ସମୟ ଧରି ସେ ଥିଲେ ପାର୍ଟିର ରାଜ୍ୟ ସମ୍ପାଦକମଣ୍ଡଳୀ ସଭ୍ୟ ।

କମ୍ରେଡ ବିଶ୍ୱନାଥ ସାହୁ ତାଙ୍କର ଦୀର୍ଘ ରାଜନୈତିକ ଜୀବନରେ ତାଙ୍କ ଅଞ୍ଚଳ ସମେତ ଗଞ୍ଜାମ ଜିଲ୍ଲାରେ ଅନେକ ମାଇନର ସ୍କୁଲ, ହାଇସ୍କୁଲ ଓ କଲେଜ ପ୍ରତିଷ୍ଠା କରିଥିଲେ ଏବଂ ସେହିସବୁ ସ୍କୁଲର ସମସ୍ୟା ନେଇ ସେ

ଅନେକ ସମୟରେ ଶିକ୍ଷା ବିଭାଗ ଓ ଡିପିଆଇ ଅଫିସ ଯାଉଥିଲେ । ଥରେ ମୁଁ ତାଙ୍କ ସହିତ ଡିପିଆଇ ଅଫିସ ଯାଇଥିଲି । ଡିପିଆଇଙ୍କଠାରୁ ଆରମ୍ଭ କରି ସାଧାରଣ କ୍ଲର୍କ ପର୍ଯ୍ୟନ୍ତ ସମସ୍ତଙ୍କ ଉପରେ ତାଙ୍କର କି ଅଖଣ୍ଡ ପ୍ରଭାବ ତାହା ମୁଁ ନିଜ ଆଖିରେ ଦେଖିଛି ।

ସେ ଥିଲେ ଓଡ଼ିଶାରେ କୃଷକ ଆନ୍ଦୋଳନର ସର୍ବଜନ ସ୍ୱୀକୃତ ନେତା । ଭାରତର ପ୍ରଥମ କୃଷକ ସଂଗଠନ ଅଖିଳ ଭାରତ କୃଷକ ସଭାରେ ଦୀର୍ଘଦିନ ଧରି ଜନନେତା ଗଙ୍ଗାଧର ପାଇକରାୟ ସଭାପତି ଓ ବିଶ୍ୱନାଥ ବାବୁ ସମ୍ପାଦକ ଥିଲେ । ପରବର୍ତ୍ତୀ ସମୟରେ ଗଙ୍ଗାଧର ପାଇକରାୟଙ୍କ ମୃତ୍ୟୁ ପରେ ସେ କୃଷକ ସଭାର ସଭାପତି ରହିଥିଲେ । ବିଧାନସଭା ଭିତରେ ଓ ବାହାରେ ସେ ସର୍ବଦା କୃଷକମାନଙ୍କର ସ୍ୱାର୍ଥରକ୍ଷା ପାଇଁ ଲଢ଼େଇ କରୁଥିଲେ ।

ବିଶ୍ୱନାଥ ବାବୁଙ୍କ ସହ ମୋର ପରିଚୟ ଦୀର୍ଘବର୍ଷର । ହାଇସ୍କୁଲରେ ପଢୁଥିବା ସମୟରେ ନୂଆ ଦୁନିଆ ପୃଷ୍ଠାରୁ ତାଙ୍କୁ ଜାଣିଥିଲି ଶକ୍ତିଶାଳୀ ଗଞ୍ଜାମ ଜିଲ୍ଲା ପାର୍ଟିର ସମ୍ପାଦକ ରୂପେ । କିନ୍ତୁ ବୋଧହୁଏ ଦେଖି ନ ଥିଲି । ମୋର ଯାହା ମନେପଡୁଛି ତାଙ୍କୁ ପ୍ରଥମେ ଦେଖିଲି ୧୯୬୯ ମସିହାରେ ତତ୍କାଳୀନ ଅବିଭକ୍ତ ବାଲେଶ୍ୱର ଜିଲ୍ଲା ବା ବର୍ତ୍ତମାନର ଭଦ୍ରକ ଜିଲ୍ଲାର ଚାନ୍ଦବାଲିଠାରେ ଅନୁଷ୍ଠିତ ହେଉଥିବା କୃଷକ ସଭାର ରାଜ୍ୟ ସମ୍ମିଳନୀରେ । ସେତେବେଳେ ମୁଁ ମାଟ୍ରିକ ପରୀକ୍ଷା ଦେଇ କୃଷକ ସଭାର ପଦଯାତ୍ରାରେ ସାମିଲ ହୋଇ ଚାନ୍ଦବାଲି ଯାଇଥିଲି । ତା'ପରେ ଭଦ୍ରକ କଲେଜରେ ପଢୁଥିବା ସମୟରେ କଟକରେ (ରାଜ୍ୟ ପାର୍ଟି ଅଫିସ କଟକର ଚାନ୍ଦିନୀଚୌକରେ ଥାଏ) ବିଶ୍ୱନାଥ ବାବୁଙ୍କୁ ଅନେକ ଥର ଦେଖିଥିଲେ ବି ବ୍ୟକ୍ତିଗତ ପରିଚୟ ନ ଥିଲା ।

୧୯୭୬ ମସିହାରେ ରାଜ୍ୟ ପାର୍ଟିର ଶିକ୍ଷା ବିଭାଗ ତରଫରୁ ପାର୍ଟି କ୍ଲାସ ନେବା ପାଇଁ ଶିକ୍ଷକମାନଙ୍କର ଏକ ବୈଠକ ଅନୁଷ୍ଠିତ ହୋଇଥାଏ । ଯେଉଁମାନେ କେନ୍ଦ୍ରୀୟ ପାର୍ଟି ସ୍କୁଲ ଓ ଉଚ୍ଚତର ଶିକ୍ଷା ପାଇଥାଆନ୍ତି ସେମାନଙ୍କୁ ଡକାଯାଇଥାଏ । କମ୍ରେଡ ଗୁରୁ ଚରଣ ପଟ୍ଟନାୟକ ଶିକ୍ଷା ବିଭାଗର ମୁଖ୍ୟ । ବିଶ୍ୱନାଥ ବାବୁ ପାର୍ଟି କ୍ଲାସର ଶିକ୍ଷକ ନ ଥିଲେ ବି କୌଣସି କାରଣରୁ ସେଇ ବୈଠକରେ ଉପସ୍ଥିତ ଥାଆନ୍ତି । ଉକ୍ତ ବୈଠକରେ କିଏ କେଉଁ କ୍ଲାସ ନେବ ସ୍ଥିର ହେବାର ଥାଏ । ମୁଁ ବିଶ୍ୱ କମ୍ୟୁନିଷ୍ଟ ଆନ୍ଦୋଳନ ଏବଂ ଭାରତର ସ୍ୱାଧୀନତା ସଂଗ୍ରାମ ଓ କମ୍ୟୁନିଷ୍ଟ ପାର୍ଟିର ଇତିହାସ ଏହି ଦୁଇଟି ବିଷୟ ନେବି ବୋଲି କହିଲି । ବିଶ୍ୱନାଥ ବାବୁ ଆଶ୍ଚର୍ଯ୍ୟ ହୋଇ ପଚାରିଲେ– ତମେ ପାର୍ଟି କ୍ଲାସ ନେବ ? ତମର ବୟସ କେତେ ? ମୋର ସେତେବେଳକୁ ୨୩/୨୪ ବର୍ଷ ହେବ । ବିଶ୍ୱନାଥ ବାବୁଙ୍କ ପ୍ରଶ୍ନରେ ମୁଁ ଅପ୍ରତିଭ ହୋଇଗଲି । ମୋତେ ସେଇ ପରିସ୍ଥିତିରୁ ରକ୍ଷା କରିବା ପାଇଁ ଗୁରୁଚରଣ ବାବୁ କହିଲେ– କ୍ଲାସ ନେବା ଜ୍ଞାନ ଉପରେ ନିର୍ଭର କରେ, ବୟସ ସହିତ ସମ୍ପର୍କ କ'ଣ ? ଆମେ ଭବିଷ୍ୟତ ପାଇଁ ନୂଆ ନୂଆ ଶିକ୍ଷକ ସୃଷ୍ଟି କରିବାକୁ ଚାହୁଁ । ବିଶ୍ୱନାଥ ବାବୁ ହସି ହସି ସମ୍ମତିରେ ମୁଣ୍ଡ ହଲାଇଥିଲେ । ତା'ର ୨ ବର୍ଷ ପରେ ମୁଁ ନୂଆଦୁନିଆ ସମ୍ପାଦକ ମଣ୍ଡଳୀରେ ଯୋଗଦେଇ ମାସକୁ ୧୫ଦିନ ରହି ଲେଖାଲେଖି କରୁଥାଏ । ବିଶ୍ୱନାଥ ବାବୁ ସେତେବେଳେ ଏମଏଲଏ । ଏମଏଲଏ ଥାଇ ମଧ୍ୟ ସେ ନୂଆଦୁନିଆ ପାଇଁ ଗ୍ରାହକ ସଂଗ୍ରହ କରନ୍ତି । ଗଞ୍ଜାମ ଜିଲ୍ଲାର ଯେଉଁ ଶାଖାକୁ ଯାଆନ୍ତି, ପଚାରନ୍ତି– ନୂଆଦୁନିଆର ଗ୍ରାହକ ହୋଇଛ ? ଏଣୁ ସେ ପ୍ରତି ମାସ କଟକସ୍ଥ ନୂଆଦୁନିଆ ଅଫିସ୍‌କୁ ଆସନ୍ତି, ସାଥିରେ ୮/୧୦ଟି ଗ୍ରାହକ ଚାନ୍ଦା ଆଣିଥାଆନ୍ତି । ସେଇ ସମୟରେ ମୋର ତାଙ୍କ ସହିତ ଘନିଷ୍ଠ ସମ୍ପର୍କ ସୃଷ୍ଟି ହୋଇଥିଲା । ନୂଆଦୁନିଆ ଅଫିସରେ ପ୍ରଥମ ସାକ୍ଷାତରେ ସେ କହିଥିଲେ– ଗୁରୁ ଚରଣ ବାବୁ ଠିକ୍ କହିଥିଲେ । ତମେ ଭଲ ଲେଖୁଛ ଓ କ୍ଲାସ ନେଉଛ ।

କଟକରେ ୧୧ ବର୍ଷ ରହଣି ପରେ ନୂଆଦୁନିଆ ଅଫିସ ୧୯୮୯ରେ ଭୁବନେଶ୍ୱର ଆସିଲା । ଭୁବନେଶ୍ୱର ଆସିବା ପରେ ବିଶ୍ୱନାଥ ବାବୁଙ୍କ ସହିତ ସମ୍ପର୍କ ବଢିଗଲା । ମୁଁ ଦେଖିଛି, ବିଶ୍ୱନାଥ ବାବୁଙ୍କୁ ଆଳସ୍ୟ କେବେ ସ୍ପର୍ଶ କରି ନାହିଁ । ସେ ଜିଲ୍ଲା ସମ୍ପାଦକ ଥିବାବେଳେ ଯେପରି ବିଭିନ୍ନ ଅଞ୍ଚଳ ବୁଲି ୮/୧୦ ଦିନରେ ଥରେ ଘରକୁ ଫେରନ୍ତି, ପରବର୍ତ୍ତୀ ସମୟରେ ମଧ ରୁଟିନ୍ ଠିକ୍ ସେୟା । ୨ଦିନ ଦିଗପହଣ୍ଡିରେ ତ ୨ଦିନ ଆସ୍କାରେ ଓ ତା'ପରେ ଅନ୍ୟ କେଉଁ ଅଞ୍ଚଳ । ସେ ପାର୍ଟି ତରଫରୁ ଅବିଭକ୍ତ କୋରାପୁଟ ଜିଲ୍ଲା ଦାୟିତ୍ୱରେ ବହୁବର୍ଷ ଧରି ଥିଲେ ଏବଂ ଗଜପତି ଜିଲ୍ଲା ଦାୟିତ୍ୱରେ ମଧ । ଥରେ ସେ କୋରାପୁଟ ଗଲେ ୬/୭ଦିନ ରହି ବିଭିନ୍ନ ଅଞ୍ଚଳ ଗସ୍ତ କରନ୍ତି ଏବଂ ଶେଷ ପର୍ଯ୍ୟନ୍ତ ତାଙ୍କର ଗଜପତି ଜିଲ୍ଲା ସହିତ ଘନିଷ୍ଠ ସମ୍ପର୍କ ଥିଲା । ୧୦/ ୧୫ ବର୍ଷ ତଳେ ମାଓବାଦୀମାନଙ୍କ ତରଫରୁ ଗଜପତି ଜିଲ୍ଲା ସମ୍ପାଦକଙ୍କ ପ୍ରତି ବିପଦର ସମ୍ବାଦ ମିଳିଲା । ବିଶ୍ୱନାଥ ବାବୁ ପାରଳାଖେମୁଣ୍ଡି ଯାଇ ସେଠାରୁ ସିଧା ପହଞ୍ଚିଗଲେ ଜଙ୍ଗଲ ଭିତରେ ଥିବା ଏକ ଗାଁରେ ଯାହାଥିଲା ମାଓବାଦୀଙ୍କ ଗଡ଼ । ସେଠାରେ ମାଓବାଦୀ ନେତାଙ୍କ ଦ୍ୱାର ମୁହଁରେ ସିଧା ପହଞ୍ଚି ଡାକଦେଲେ– ରେ ଅମୁକ ! ଘରେ ଅଛୁ ? ମାଓବାଦୀ ନେତା ଜଣକ ବିଶ୍ୱନାଥ ବାବୁଙ୍କୁ ଦେଖି ଛାନିଆ । ପଚାରିଲା– ଆଜ୍ଞା ! ଆପଣ ହଠାତ୍ କେମିତି ? ବିଶ୍ୱନାଥ ବାବୁଙ୍କ ଉତ୍ତର – ୧୯୫୪ରେ ତୋ ବାପାକୁ କମ୍ୟୁନିଷ୍ଟ କରିବା ପାଇଁ ଏ ଗାଁକୁ ଆସିଥିଲି । ତା'ପରେ ଅନେକ ଥର ଆସିଛି । ତମ ଗାଁରେ ମିଟିଂ କରିଛି । ତୁ ପିଲାଟି ହୋଇଥିଲୁ । ଏବେ ଶୁଣୁଛି ତୁ କୁଆଡ଼େ ନଳୀ (ବନ୍ଧୁକ) ରଖିଛୁ । ଆମେ କୁଆଡ଼େ ସଂଶୋଧନବାଦୀ । ଆଣ ନଳୀ, ଚଳା ଗୁଳି ବିଶ୍ୱନାଥ ସାହୁ ଉପରେ । ତମେ ସବୁ ଏତା ଶିଖିଛ କିରେ ? ଲୋକମାନଙ୍କ ସହିତ କେତେ ଘନିଷ୍ଠ ସମ୍ପର୍କ ଓ ବିଶ୍ୱାସ ଥିଲେ ଜଣେ ଏଭଳି କରିପାରେ ?

କେବଳ ଗଞ୍ଜାମ, ଗଜପତି ଓ କୋରାପୁଟ ନୁହେଁ, କୃଷକ ସଭା କାମରେ ସେ ସମଗ୍ର ଓଡ଼ିଶା ବୁଲିଛନ୍ତି । ଶେଷ ଆଡ଼କୁ ବୟସାଧିକ୍ୟ ଯୋଗୁଁ ଘୁରାଘୁରି କମିଯାଇଥିଲେ ବି ବନ୍ଦ ହୋଇ ନ ଥିଲା । ୨୦୧୨ ମସିହା ପଞ୍ଚାୟତ ନିର୍ବାଚନ ସମୟରେ ନାରାୟଣ ରେଡ୍ଡି ପୋସ୍କୋ ଘଟଣାରେ ଗିରଫ ହୋଇ ଜେଲ୍‌ରେ ଥିବାରୁ ପାର୍ଟି ମୋତେ ଦାୟିତ୍ୱ ଦେଇଥାଏ ଛତ୍ରପୁରରେ ନିର୍ବାଚନ ପରିଚାଳନା ପାଇଁ । ସେତେବେଳେ ଚମାଖଣ୍ଡି ପାର୍ଟି ଅଫିସ୍‌ରେ ମୁଁ ରହୁଥାଏ । ଉପର ମହଲରେ ୨ଟି ରୁମ୍ । ଗୋଟିକରେ ମୁଁ, ଅନ୍ୟଟିରେ ବିଶ୍ୱନାଥ ବାବୁ ଓ ଜୋନ୍ ସମ୍ପାଦକ ନୀଳକଣ୍ଠ । ବିଶ୍ୱନାଥ ବାବୁ ୮୭ ବର୍ଷ ବୟସରେ ଦିନ ରାତି ନମାନି ଘୁରୁଥାଆନ୍ତି ।

୨୦୧୫ ଫେବୃୟାରୀରେ ସମ୍ବଲପୁରଠାରେ ଅନୁଷ୍ଠିତ ରାଜ୍ୟ ସମ୍ମିଳନୀରେ ସେ ରାଜ୍ୟ କଣ୍ଟ୍ରୋଲ କମିଶନର ଚେୟାରମ୍ୟାନ ନିର୍ବାଚିତ ହୋଇଥିଲେ । ଅର୍ଥାତ୍ ଶେଷ ଜୀବନ ପର୍ଯ୍ୟନ୍ତ ପାର୍ଟି ତାଙ୍କୁ ଯଥୋଚିତ ସମ୍ମାନ ଦେଇଥିଲା । ତାଙ୍କ ବିୟୋଗରେ ରାଜ୍ୟ ପାଟ ପକ୍ଷରୁ ମୁଁ ଗଭୀର ଶୋକ ପ୍ରକାଶ କରୁଛି । କମ୍ରେଡ ବିଶ୍ୱନାଥ ସାହୁ ଲାଲ ସଲାମ ।

*ରାଜ୍ୟ ସମ୍ପାଦକ,*
*ଭାରତୀୟ କମ୍ୟୁନିଷ୍ଟ ପାର୍ଟି,*
*ଭଗବତୀ ଭବନ, ଭୁବନେଶ୍ୱର*

# ଜନନେତା ବିଶ୍ୱନାଥ ସାହୁ

ଆଶିଷ କାନୁନ୍‌ଗୋ

ଓଡ଼ିଶାର ଚାଷୀମାନଙ୍କ ମଧ୍ୟରେ ବିଶ୍ୱନାଥ ସାହୁ ଏକ ଜଣାଶୁଣା ନାମ । ୯୧ ବର୍ଷ ବୟସରେ ତାଙ୍କର ଦେହାନ୍ତ ହୋଇଯାଇଛି । ମାର୍ଚ୍ଚ ୧୮ ତାରିଖ ରାତି ୧୧ ଘଣ୍ଟା ସମୟରେ ତାଙ୍କର ଦେହାନ୍ତ ଖବର ପ୍ରଚାରିତ ହେଲା ପରେ ସାଧାରଣ ମଣିଷଙ୍କ ଭିତରେ ଏକ ଦୁଃଖର ଛାୟା ଖେଳିଯାଇଥିଲା । ମୁଁ ରାତ୍ରିରେ ଏହି ଦୁଃଖଦ ଖବର ଶୁଣି ହଠାତ୍ ବିଶ୍ୱାସ କରି ପାରି ନ ଥିଲି । ମୋର ମନେ ପଡୁଥିଲା କମ୍ରେଡ ସାହୁଙ୍କ ସହିତ ମୋର ପ୍ରଥମ ଦେଖାରେ ତାଙ୍କର ସହାନୁଭୂତିଶୀଳତାର ସର ।

୧୯୭୨ ମସିହା । ଭାରତୀୟ କମ୍ୟୁନିଷ୍ଟ ପାର୍ଟି କେନ୍ଦ୍ରୀୟ କମିଟି ଦିଲ୍ଲୀ ଚାଲର ଡାକରା ଦେଇଥାନ୍ତି । ଆଜି ଦିଲ୍ଲୀ ଚାଲ ଡାକରା ଦିଆଗଲେ ବିନା ଟିକେଟରେ ହଜାର ହଜାର ସଂଖ୍ୟାରେ ଦିଲ୍ଲୀ ଯାଇ ହେଉଛି । କମ୍ରେଡ ସାହୁଙ୍କ ନେତୃତ୍ୱରେ ଗଞ୍ଜାମ ଜିଲ୍ଲାର ସାଥୀମାନେ ଏକ ରେଳ ବଗି ରିଜର୍ଭ କରି ଦିଲ୍ଲୀ ଯାଉଥାନ୍ତି । ମୁଁ ସେତେବେଳେ ନିମାପଡ଼ା କଲେଜର ଛାତ୍ରନେତା । ଦିଲ୍ଲୀ ଯିବା ପାଇଁ ଜେନେରାଲ ଟିକେଟ କରିଥାଏ । କେମିତି ଏକୁଟିଆ ଯିବି ସେହି କଥା ଚିନ୍ତା କରୁଥାଏ । ହଠାତ୍ ରେଳ ଷ୍ଟେସନରେ ବସନ୍ତ ପାଇକରାୟ ଓ ପ୍ରୟାତ ରମେଶ ମିଶ୍ର ଦେଖାହୋଇ ଗଞ୍ଜାମ ଜିଲ୍ଲାର ରେଳ ବଗିରେ ଯିବା ପାଇଁ ପରାମର୍ଶ ଦେଇଥିଲେ । ମୋର ସାହସ ପାଉ ନ ଥାଏ । ଭୁବନେଶ୍ୱର ଷ୍ଟେସନରେ ଗଞ୍ଜାମର ରେଳବଗି ଲାଗିଲା । ସ୍ଲୋଗାନରେ ରେଳ ଷ୍ଟେସନ କମ୍ପିଯାଉଥାଏ । ମୋତେ ନେଇ ବଗି ପାଖରେ ବିଶ୍ୱନାଥ ସାହୁଙ୍କ ସହିତ ପରିଚୟ କରାଇ ଦେଲେ । ମୋତେ କମ୍ରେଡ ସାହୁ ସହାନୁଭୂତି ଦେଖାଇ ଗୋଟିଏ ଜାଗାରେ ବସିବାକୁ ପରାମର୍ଶ ଦେଇଥିଲେ । ସେତେବେଳେ ସିଧାସଳଖ ଟ୍ରେନ୍ ଦିଲ୍ଲୀ ଯାଉ ନ ଥିଲା । କଲିକତା ଯାଇ ତୋଫାନ ଏକ୍ସପ୍ରେସରେ ଗଞ୍ଜାମ ବଗି ଲାଗିଲା । ସେଠାରୁ ଆମକୁ ଦିଲ୍ଲୀ ଯିବାକୁ ହେଲା । ପ୍ରାୟ ଦୁଇଦିନ ଟ୍ରେନ ଯାତ୍ରା ପରେ ଆମେ ଦିଲ୍ଲୀରେ ପହଞ୍ଚିଥିଲୁ । ଦୁଇଦିନ ଭିତରେ ତାଙ୍କର ସ୍ନେହ ଆଦର ମୋତେ ପ୍ରଭାବିତ କରିଥିଲା । ଟ୍ରେନରେ ଗଲାବେଳେ ମୋର ବାପା କ'ଣ କରୁଛନ୍ତି, ମୁଁ ଭବିଷ୍ୟତରେ କମ୍ୟୁନିଷ୍ଟ ପାର୍ଟିରେ ଯୋଗ ଦେବି କି ନାହିଁ, ଏମିତି ଅନେକ ଅନେକ କଥା ପଚାରି ବୁଝୁଥିଲେ । ସେହି ଦୁଇଦିନ ଭିତରେ କାହିଁକି କମ୍ୟୁନିଷ୍ଟ ହେବ, ସମାଜବାଦ କ'ଣ, ସମାଜ ବିକାଶର ଧାରା କ'ଣ ସବୁ ଆଲୋଚନା କରି ମୋ ମନ ଭିତରେ ଏକ ଗଭୀର ରେଖାପାତ କରାଇ ପାରିଥିଲେ । ରେଳ ବଗି ଭିତରେ ଯାଉଥିବା ସମସ୍ତ ସାଥୀଙ୍କର କମ୍ରେଡ ସାହୁଙ୍କ ପ୍ରତି ସମ୍ମାନ ଦେଖି ମୋର ମଧ୍ୟ ତାଙ୍କ ପ୍ରତି ସମ୍ମାନ ବଢ଼ିଯାଇଥିଲା । ତାଙ୍କରି ପ୍ରଭାବରେ ମୁଁ ପ୍ରଭାବିତ ହୋଇ ୧୯୭୬ ମସିହାରେ କମ୍ୟୁନିଷ୍ଟ ପାର୍ଟିର ସଭ୍ୟପଦ ଗ୍ରହଣ କରି ଜିଲ୍ଲା ନେତୃତ୍ୱକୁ ଆସିଲା ପରେ ତାଙ୍କ ସହିତ ମିଳିମିଶି କାମ କରିବାର ଅନେକ ସୁଯୋଗ ସୃଷ୍ଟି ହୋଇଛି ।

ବିଶ୍ୱନାଥ ସାହୁ ଦୀର୍ଘବର୍ଷ ଧରି କୃଷକ ସଭାର ନେତୃତ୍ୱ ନେଇ ଓଡ଼ିଶାରେ ଏକ କୃଷକ ଆନ୍ଦୋଳନ ଗଢ଼ିତୋଳିବାରେ ଉଦ୍ୟମ କରି ଆସିଥିଲେ । କୃଷକମାନଙ୍କ ସମସ୍ୟା ସମ୍ପର୍କରେ ପ୍ରଶାସନ ସହିତ ଆଲୋଚନା କଲାବେଳେ ଖୁବ୍ ଦୃଢ଼ତାର ସହିତ ଆଲୋଚନା କରୁଥିଲେ । ଛତ୍ରପୁର ନିର୍ବାଚନମଣ୍ଡଳୀରୁ ଦୁଇ ଦୁଇଥର ବିଧାୟକ ନିର୍ବାଚିତ ହୋଇ ଓଡ଼ିଶାର ଗରିବ, ଚାଷୀ, ଆଦିବାସୀ, ମହିଳାମାନଙ୍କର ସମସ୍ୟାକୁ ବିଧାନସଭାରେ ସଠିକ ଭାବେ ଉପସ୍ଥାପନ କରିବାରେ ପ୍ରମୁଖ ଭୂମିକା ଗ୍ରହଣ କରୁଥିଲେ । ଗାଁକୁ ଗାଁ ବୁଲି ସଂଗଠନ ତିଆରି କରିବାରେ ସେ ସିଦ୍ଧହସ୍ତ । ଯେଉଁ ଗାଁକୁ ଯାଆନ୍ତି ନିଶ୍ଚିତ ସେହି ଗ୍ରାମର କାହାକୁ ନା କାହାକୁ ମନେ ରଖିଥିବେ । ରାଜ୍ୟର କୌଣସି ଅଞ୍ଚଳକୁ ସଭା ସମିତିରେ ଯୋଗ ଦେବାକୁ ଗଲାବେଳେ ନିଶ୍ଚିତ ଭାବେ କୌଣସି ଏକ ପାର୍ଟି ସାଥୀ ଘରକୁ ଯିବା ତାଙ୍କର ଏକ ଅଭ୍ୟାସ । ଯାହାଫଳରେ ସେହି ପାର୍ଟି ସାଥୀଟି ଖୁସି ହୋଇଯାଇଥାଏ ।

୧୯୯୮ ମସିହାରେ କାକଟପୁର ଜଳେଶ୍ୱରପଡ଼ାଠାରେ କୃଷକ ସଭାର ଜୋନାଲ ସମ୍ମିଳନୀ ହେଉଥାଏ । କମ୍ରେଡ ସାହୁ ଏହି ସମ୍ମିଳନୀରେ ଯୋଗ ଦେବା ପାଇଁ ଯାଇଥାନ୍ତି । ସମ୍ମିଳନୀ ପରେ ହଠାତ୍ ଆମ ହରିଦାଶପୁର ଗ୍ରାମରେ ପହଞ୍ଚି ମୋତେ ଖୋଜିଲେ । ମୁଁ ଘରେ ନ ଥାଏ । ମୋ ବୋଉ ଓଡ଼ିଶାର ସମସ୍ତ କମ୍ୟୁନିଷ୍ଟ ନେତାଙ୍କ ନାମ ଶୁଣିଛି । ବିଶ୍ୱନାଥ ସାହୁ ଆସିଥିବା କଥା ଶୁଣି ଆମ ଘରକୁ ତାଙ୍କୁ ଡାକିନେଲା । କମ୍ରେଡ ସାହୁଙ୍କୁ ଦେଖିବା ପାଇଁ ଆମ ଘର ପାଖରେ ଅନେକ ଲୋକ ଜମା ହୋଇ ଦେଶ ବିଷୟରେ ଆଲୋଚନା କରୁଥାନ୍ତି । ତାଙ୍କର ସାଥୀମାନଙ୍କ ପ୍ରତି ସହାନୁଭୂତି ଆଜି ବି ଆମ ଗାଁ ଲୋକେ ମନେ ରଖିଛନ୍ତି ।

ଜନନେତା ବିଶ୍ୱନାଥ ସାହୁ ଆଜି ନାହାନ୍ତି । କୃଷକମାନଙ୍କ ପାଇଁ ଦେଖିଥିବା ସ୍ୱପ୍ନ ଆଜି ପୂର୍ଣ୍ଣ ହୋଇପାରିନି । ଦେଶ ଓ ରାଜ୍ୟ ସରକାରଙ୍କ କୃଷକ ବିରୋଧୀ ନୀତି ବିରୁଦ୍ଧରେ ଆଉ ଏକ ସ୍ୱାଧୀନତା ସଂଗ୍ରାମ ଆବଶ୍ୟକ ବୋଲି ସେ ସବୁବେଳେ କୁହନ୍ତି । ତାଙ୍କର ଅବର୍ତ୍ତମାନରେ ସେ ଆନ୍ଦୋଳନକୁ ଆଗେଇ ନେବାକୁ ହେବ । ଏହା ହିଁ ହେବ ସାଥୀଙ୍କ ପ୍ରତି ଶ୍ରେଷ୍ଠ ଶ୍ରଦ୍ଧାଞ୍ଜଳି ।

*ସିପିଆଇ, ରାଜ୍ୟ ସହ-ସମ୍ପାଦକ,*
*ଭୁବନେଶ୍ୱର*

# କୃଷକ ଆନ୍ଦୋଳନର ଅଭୁଲା ନେତା
# କଃ ବିଶ୍ୱନାଥ ସାହୁ

ସୌରୀବଂଧୁ କର

ଓଡ଼ିଶାର ଅନ୍ୟତମ ବିଶିଷ୍ଟ କମ୍ୟୁନିଷ୍ଟ ନେତା ଓ କୃଷକନେତା ବିଶ୍ୱନାଥ ସାହୁଙ୍କର ଦେହାନ୍ତ ହୋଇଗଲା ଗତ ୧୯ ତାରିଖରେ । ତାଙ୍କୁ ୯୧ ବର୍ଷ ଚାଲୁଥିଲା । ସେ ଦୁଇ ଦୁଇ ଥର ଛତ୍ରପୁର ବିଧାନସଭା ନିର୍ବାଚନୀ ମଣ୍ଡଳୀରୁ ବିଧାୟକ ଭାବରେ ନିର୍ବାଚିତ ହୋଇଥିଲେ । କିନ୍ତୁ ଜଣେ ପୂର୍ବତନ ବିଧାୟକ ବା ରାଜନେତା ଭାବରେ ତାଙ୍କ ମନରେ କୌଣସି ପ୍ରକାର ଆତ୍ମଗର୍ବ ନ ଥିଲା । ଅତି ସରଳ ଓ ସାଦାସିଧା ମଣିଷ । ୨୦୧୩ ମସିହାରେ ତାଙ୍କ ସହିତ କଥା ହେବାବେଳେ ପଚାରି ଥିଲି 'ଆପଣ ଜୀବନରେ କ'ଣ ସ୍ୱପ୍ନ ଦେଖିଥିଲେ, ଯାହା ପୂରଣ ହୋଇ ପାରିଲା ନାହିଁ । ସେ କହିଲେ 'ଜୀବନରେ ପ୍ରାୟ ଯାହା କିଛି ସ୍ୱପ୍ନ ଦେଖିଛି, ଉଣା ଅଧିକେ ସବୁ ପୂରଣ ହୋଇଛି । ତେବେ ଗୋଟିଏ ସ୍ୱପ୍ନ ଅଧା ରହିଯାଇଛି । ଆଖି ବୁଜିବା ପୂର୍ବରୁ ଯଦି ବାମପନ୍ଥୀ ଦଳମାନେ ଏକାଠି ହୋଇପାରନ୍ତି, ତାହା ହେବ ମୋ ଜୀବନର ସାର୍ଥକତା । କାରଣ ବାମପନ୍ଥୀ ଆଦର୍ଶ ବ୍ୟତୀତ ସମାଜର ପରବର୍ତ୍ତନ ସମ୍ଭବ ନୁହେଁ ।"

ଅତି ଆକସ୍ମିକ ଭାବରେ ତାଙ୍କରି ଏହି ସ୍ୱପ୍ନ କେତେକାଂଶରେ ସଫଳ ହୋଇଛି ବୋଲି ମୁଁ ଭାବୁଛି । ୧୯ ତାରିଖ ମାର୍ଚ୍ଚ ୨୦୧୬ ଥିଲା ଭୁବନେଶ୍ୱରଠାରେ ପାଞ୍ଚଗୋଟି ବାମପନ୍ଥୀ ଦଳର ସମାବେଶ । ସିପିଆଇ, ସିପିଆଇ (ଏମ୍), ସିପିଆଇ(ଏମ୍ଏଲ), ଏସ୍‌ୟୁସିଆର(କମ୍ୟୁନିଷ୍ଟ) ଓ ଫରୱାର୍ଡ ବ୍ଲକ୍‌ର ମିଳିତ ଶୋଭାଯାତ୍ରା ଓ ସଭା । ସେହି ସଭାରେ ଯୋଗଦେବାକୁ ବାମପନ୍ଥୀ ଦଳ ମାନଙ୍କର ସର୍ବ ଭାରତୀୟ ନେତାମାନେ ଓଡ଼ିଶା ଆସିଥିଲେ । ଓଡ଼ିଶାର ବିଭିନ୍ନ ଜିଲ୍ଲାରୁ ହଜାର ହଜାର ସଂଖ୍ୟାରେ ଛାତ୍ର, କୃଷକ, ଶ୍ରମିକ, ମହିଳା, ଯୁବକ ଏଥିରେ ଯୋଗଦେବାକୁ ଭୁବନେଶ୍ୱରରେ ସମବେତ ହୋଇଥିଲେ । ତାଙ୍କ ପ୍ରିୟ ପାର୍ଟି ସିପିଆଇର ପ୍ରାୟ ସମସ୍ତ ନେତୃମଣ୍ଡଳୀ ରାଜ୍ୟ କାର୍ଯ୍ୟାଳୟ ଭଗବତୀ ଭବନଠାରେ ଉପସ୍ଥିତ ଥିଲେ । ତାଙ୍କର ପାର୍ଥିବ ଶରୀର ଭଗବତୀ ଭବନ କାର୍ଯ୍ୟାଳୟ ସମ୍ମୁଖରେ ରଖାଯିବା ପରେ ସେଥିରେ ସବୁ ବାମପନ୍ଥୀ ଦଳର ନେତୃବୃନ୍ଦ ଓ କର୍ମୀମାନେ ପୁଷ୍ପ ଅର୍ପଣ କରି ଶ୍ରଦ୍ଧା ଓ ସମ୍ମାନ ଜଣାଇଥିଲେ । ସିପିଆଇର ସର୍ବଭାରତୀୟ ସାଧାରଣ ସଂପାଦକ କଃ ସୁଧାକର ରେଡ୍ଡୀଙ୍କ ଠାରୁ ଆରମ୍ଭ କରି ସିପିଆଇ (ଏମ୍)ର ସାଧାରଣ ସଂପାଦକ କଃ ସୀତାରାମ ୟେଚୁରୀ ଓ ଅନ୍ୟ ଦଳର ସର୍ବଭାରତୀୟ ନେତୃମଣ୍ଡଳୀ ଲାଲସଲାମ୍ ଜଣାଇ ତାଙ୍କୁ ସମ୍ମାନ ପ୍ରଦାନ କରିବା ବେଳେ ମୋ'ର ଅନୁଭବ ହେଲା ତାଙ୍କର ବାମପନ୍ଥୀ ଐକ୍ୟର ସ୍ୱପ୍ନ ସାକାର ହୋଇଛି ।

କୃଷକ ଆନ୍ଦୋଳନର ସେ ଥିଲେ ପ୍ରମୁଖ ନେତା । ଦୀର୍ଘ ବର୍ଷ ଧରି ଅଖିଳ ଭାରତ କୃଷକ ସଭା, ଓଡ଼ିଶାର ସଭାପତି ପଦ ମଣ୍ଡନ କରିଥିଲେ । ତାଙ୍କ ନିକଟରେ ପଦ ପଦବୀ ଥିଲା ଗୌଣ । ଲୋକମାନଙ୍କର

ସେବା କରିବା ଥିଲା ମୁଖ୍ୟ । କୃଷକ ମାନଙ୍କର ବିପନ୍ନ ସ୍ଥିତି ତାଙ୍କ ମନକୁ ବେଶ୍ ଆଚ୍ଛନ୍ନ କରୁଥିଲା । ଓଡ଼ିଶାର ଚାଷୀମୃତ୍ୟୁ ତାଙ୍କୁ ଗଭୀର ଆଘାତ ଦେଉଥିଲା । ସେ ସଦାସର୍ବଦା ଜନ ଆନ୍ଦୋଳନରେ ନିଜକୁ ସାମିଲ୍ କରୁଥିଲେ ଏବଂ ଗଣ ଆନ୍ଦୋଳନ ମାଧମରେ ହିଁ ଗଣତାନ୍ତ୍ରିକ ବ୍ୟବସ୍ଥାରେ ଲୋକମାନଙ୍କୁ ସୁବିଧା ଦିଆଯାଇ ପାରିବ ବୋଲି ବିଚାର କରୁଥିଲେ ।

ସେ ବଧାୟକ ଥିବା ବେଳେ କୌଣସି ନୀତିଗତ ପ୍ରଶ୍ନ ଉପରେ କିପରି ବିଧାୟକମାନଙ୍କୁ ଏକାଠି କରି ପାରୁଥିଲେ ତାହା ତାଙ୍କର ଜନଗଣଙ୍କ ପ୍ରତି ଥିବା ଅକୁଣ୍ଠ ପ୍ରତିବଦ୍ଧତାର ପ୍ରମାଣ ଦିଏ ।

ସେ ନିଜେ ମୋତେ କହିଥିଲେ, " ଭୂ-ସଂସ୍କାର ଆଇନୁ ଆସେମ୍ଲିରେ ଗୃହୀତ କରିବା ପାଇଁ ମୁଁ ଆପ୍ରାଣ ଚେଷ୍ଟା କରିଛି ଏବଂ ଦଳଗତ ଭିନ୍ନତା ସତ୍ତ୍ୱେ ନୀତିଗତ ପ୍ରଶ୍ନ ଉପରେ ବିଧାୟକମାନେ ଏକାଠି ହେବା ଏହାର ପ୍ରକୃଷ୍ଟ ପ୍ରମାଣ ।" ଏପରିକି ସ୍ୱର୍ଗତ ନାଗଭୂଷଣ ପଟ୍ଟନାୟକଙ୍କୁ ଫାସିଦଣ୍ଡରୁ ରକ୍ଷା କରିବା ପାଇଁ କମ୍ୟୁନିଷ୍ଟ ପାର୍ଟିର ଏକାକୀ ବିଧାୟକ ହୋଇ ମଧ ବିଧାନସଭାରେ ସମସ୍ତଙ୍କୁ ଏକଜୁଟ କରି ପ୍ରସ୍ତାବ ପାଶ୍ କରିବା ତାଙ୍କ ବଳିଷ୍ଠ ନେତୃତ୍ୱ, ଜନଗଣଙ୍କ ପ୍ରତି ଅତୁଟ ବିଶ୍ୱାସ ଯୋଗୁ ସମ୍ଭବ ହୋଇଥିଲା ।

ତାଙ୍କର ଶୂନ୍ୟସ୍ଥାନ ପୂରଣ କରିବା କଷ୍ଟସାଧ ବ୍ୟାପାର । ତାଙ୍କର ଆଦର୍ଶ ପ୍ରତି ଏକନିଷ୍ଠ ହୋଇ କାର୍ଯ୍ୟକରିବା ହେଉଛି ତାଙ୍କ ପ୍ରତି ଗଭୀର ଶ୍ରଦ୍ଧାଞ୍ଜଳି ।

ଗଜପତି ନଗର
ଭୁବନେଶ୍ୱର - ୭୫୧୦୦୫
ଫୋ: ୯୪୩୭୦୩୬୩୪୨



# ବିଶ୍ୱନାଥ ସାହୁ ଏକ ସ୍ୱତନ୍ତ୍ର ଚରିତ୍ର

ଅଭୟ ସାହୁ

ମାର୍ଚ୍ଚ ୧୯ ତାରିଖ ସକାଳ । ଭୁବନେଶ୍ୱରରେ ଆମେ ସମସ୍ତେ ଅଛୁ । ଅର୍ଥାତ୍ ବାମପନ୍ଥୀ ସମାବେଶ ପାଇଁ ରାଜ୍ୟର ଆମେ ସମସ୍ତେ ଅଛୁ । ବା ଆଗରୁ ବା ଆସି ଏଇ ଘଣ୍ଟେ, ଦି ଘଣ୍ଟାରେ ଆସି ପହଞ୍ଚିଯିବେ । ଭୋର ସକାଳୁ ଖବର ମିଳିଲା ଯେ ବିଶ୍ୱନାଥ ସାହୁ ଚାଲିଗଲେ । ଜଣେ ଚିର ସବୁଜ ଲୋକଟା ଚାଲିଗଲେ କଣ ? ସେ ତ ବୁଢା ହେବାର ଲୋକ ନୁହଁନ୍ତି । ତାଙ୍କର କିଛି ତ ମଳିନ ପଡ଼ି ନଥିଲା । ଠୋ ଠା କଥାବାର୍ତ୍ତା ସାଙ୍ଗଙ୍କୁ ବିଭିନ୍ନ କାର୍ଯ୍ୟକ୍ରମରେ ଯୋଗ ଦେବାରେ କିଛି ଅସୁବିଧା ନ ଥିଲା । ଅବଶ୍ୟ ଏହି କିଛି ଦିନ ତଳେ ତାଙ୍କ କାନ ପାଖରେ ଏକ ଅସ୍ତ୍ରୋପଚାର କଥା ଶୁଣିଥିଲୁ । କିନ୍ତୁ ପରବର୍ତ୍ତୀ ଅବସ୍ଥାରେ ସେହି ଅସ୍ତ୍ରୋପଚାର ଜଟିଳ ରୂପ ନେଇ ଥିଲା । ଯାହା ତାଙ୍କ ଜୀବନକୁ ଶେଷରେ ଶେଷ କରିଥିଲା । ସବୁସତ୍ତ୍ୱେ ମିଣିଷର ସେହି ଯୁକ୍ତିଯୁକ୍ତ ସମାପ୍ତି କଥା ଜାଣିଥିଲେ ବି କଥାଟାକୁ ଆମେ କେହି ସହଜରେ ହଜମ କରିପାରି ନଥିଲୁ । ହତ୍‌ବାକ୍ କମ୍ୟୁନିଷ୍ଟ ପାର୍ଟି । ହତବାକ୍ ତାଙ୍କର ହଜାରେ ହଜାର ସାଥୀ ଓ ସହୋଦର । ସମସ୍ତେ ଭୁବନେଶ୍ୱର ର୍‍ୟାଲିରେ । ତାଙ୍କ ଦଳ ସି.ପି.ଆଇ ନୁହଁ, ଅନ୍ୟ ବାମପନ୍ଥୀ ଦଳ ମାନଙ୍କର ହଜାର ହଜାର ନେତା ଓ କର୍ମୀ ମଧ୍ୟ ଏଇଠି ଅଛନ୍ତି । ଏପରିକି ୫ ବାମପନ୍ଥୀ ଦଳର କେନ୍ଦ୍ର ନେତାଗଣ ମଧ୍ ଅଛନ୍ତି । ଅଛନ୍ତି ତାଙ୍କ ଦଳର ସାଧାରଣ ସମ୍ପାଦକ କଃ ସୁଧାକର ଓ.ସି.ପି.ଏମ୍‌ର ସାଧାରଣ ସମ୍ପାଦକ କଃ ସୀତାରାମ । ଏକ ଅଖଣ୍ଡ ଭାବଗମ୍ଭୀର ପରିବେଶରେ ତାଙ୍କୁ ଭଗବତୀ ଭବନଙ୍କୁ ଅଣାଗଲା । ସବୁଦଳର ନେତାମାନେ ତାଙ୍କୁ ଶ୍ରଦ୍ଧାଞ୍ଜଳି ଜଣାଇଲେ । ତାଙ୍କର ସମୁଦାୟ ରାଜନୈତିକ ଜୀବନରେ ସେ ସୃଷ୍ଟି କରିଥିବା ବିରାଟ ପରିବାର ସେଦିନ ଶ୍ରଦ୍ଧାର ସୁମନ, ଭାବନାର ସୁମନ, ଆଦର୍ଶର ସୁମନ ତାଙ୍କୁ ଅର୍ପଣ କରିଥିଲେ । ତାଙ୍କ ଭଳି ଜଣେ ବିରଳ ବ୍ୟକ୍ତିତ୍ୱ ବିୟୋଗରେ ଏକ ବିରଳ ସମାରୋହ ସୃଷ୍ଟି ହୋଇଥିଲା ନିଶ୍ଚୟ ।

ମୁଁ ତାଙ୍କ ସାଙ୍ଗରେ କାମ କରିଛି:- ଆମ ପାର୍ଟିର ସଂଗଠନରେ ସ୍ୱତନ୍ତ୍ର ଶୃଙ୍ଖଳା ରହିଛି । ସବୁ ସଂଗଠନକୁ ପରିଚାଳନା କରିବା ପାଇଁ ବିଭାଗ ଗଠନ ହୋଇଥାଏ । ସେ ଅନେକ ଦିନ ଧରି ଓଡ଼ିଶାରେ କୃଷକ ସଭାର ନେତୃତ୍ୱ ନେଇଛନ୍ତି । ଏହି ସମୟରେ ଏକ ସମୟରେ ମୁଁ କୃଷକ ବିଭାଗର ଦାୟିତ୍ୱରେ ଥିଲି । ତେଣୁ କୃଷକ ସଭାର ରାଜ୍ୟ ସ୍ତରୀୟ ବୈଠକରେ ଯୋଗଦେବାର ଦାୟିତ୍ୱ ମୋ ଉପରେ ଥାଏ । ତେଣୁ କୃଷକମାନଙ୍କ ପ୍ରତି କେତେ ଦରଦ ତାଙ୍କ ଭିତରେ ତାହା ମୁଁ ଦେଖିଛି । ସେ କେବଳ ଭୁବନେଶ୍ୱରରେ କୃଷକଙ୍କ କଥା କହୁ ନଥିଲେ । ସେ ସାରା ଓଡ଼ିଶା ଘୁରୁଥିଲେ । ଓଡ଼ିଶାର ନକ୍ସା ତାଙ୍କ ଆଖି ଆଗରେ ଥିଲା । ନବରଙ୍ଗପୁର ରାଇରଙ୍ଗପୁର ଓ ମହୋଦଧି ମହେନ୍ଦ୍ର ତନୟାର ଓଡ଼ିଶାର ବାସ୍ତବ ରୂପ ସେ ଦେଖିଥିଲେ । କୃଷକ ଓ କୃଷିର ବିକାଶରେ ଓଡ଼ିଶାର

ବିକାଶ । କୃଷିକୁ ଛାଡ଼ି ଓଡ଼ିଶାର ବିକାଶର ଚିନ୍ତା କରାଯାଇପାରେନା । କୃଷକର ଦାବି ସମ୍ପର୍କରେ ଏପଟ ସେପଟ କଥା କହିଲେ ସେ ବିଗିଡ଼ି ଯାଉଥିଲେ । ଯୋର୍‌ରେ ଚିଡ଼ି ଯାଉଥିଲେ । ଯେମିତି ରାଗି ପଂଚମ କିନ୍ତୁ ଖାଇବାବେଳ ହେଲେ ସମସ୍ତଙ୍କୁ ଡ଼ାକି ହାକି ଖାଇବାକୁ ଯାଉଥିଲେ । ବାରମ୍ବାର ପଚାରୁଥିଲେ, ଖାଇଲୁଣି କିରେ, ଖାଇସାରିଲେଣି ନା ନାହିଁ । ସିଏ ନିଶ୍ଚୟ ଏକ ବିରଳ କୃଷକ ନେତା, ଏକ ବିରଳ କମ୍ୟୁନିଷ୍ଟ କୃଷକ ନେତା । ଏକ ସ୍ୱତନ୍ତ୍ର ମାର୍କ୍ସବାଦୀ - ଲେନିନ୍ ବାଦୀ କୃଷକ ନେତା । ସେ ଚାଲୁଥିଲେ, ବାମପନ୍ଥୀ ଆଦର୍ଶ ଚାଲୁଥିଲା । ସେ ରାଜ୍ୟର ଅବହେଳିତ, ଓ ପଛୁଆ ଅଞ୍ଚଳର ପାର୍ଟିର ଦାୟିତ୍ୱ ନେଇ ଗ୍ରସ୍ତ କରୁଥିଲେ । ଗଂଜାମ ପାର୍ଟି କଥା ପଡ଼ିଲେ ଅନେକ ଆଲୋଚନାକୁ ଆସିବ । ଗଂଜାମ ସମ୍ପର୍କରେ ମୁଁ ସବୁକଥା ଜାଣିନି କଃ ସଦାନନ୍ଦ ମହାନ୍ତି, କଃ ହରିହର ଦାଶ ଓ କଃ ଲକ୍ଷ୍ମଣ ମହାପାତ୍ର ସହିତ କିଛି ମିଶିଛି । କଃ ସଦାନନ୍ଦ ମହାନ୍ତି ପାର୍ଟିରେ ରାଜ୍ୟ ସମ୍ପାଦକ ଥିଲା ବେଳେ ମୁଁ ଛାତ୍ର ସଂଘର ସମ୍ପାଦକ ଥିଲି । କଃ ଲକ୍ଷ୍ମଣ ସହାପାତ୍ର ରାଜ୍ୟ ସଭାରେ ଥିଲାବେଳେ ଦିଲ୍ଲିରେ ଛାତ୍ର ଯୁବ ରାଲିକୁ ଯାଇ ତାଙ୍କ ସାଉଥ୍ ଆଭେନ୍ୟୁ ଘରେ ରହୁଥିଲି । ଅବିଭାଜିତ ଗଂଜାମ ଜିଲ୍ଲାରେ ତାକରଡା ରଇତ ଆନ୍ଦୋଳନଠାରୁ ଆରମ୍ଭ କରି ଟାଟା ବିରୋଧୀ ଆନ୍ଦୋଳନ ପର୍ଯ୍ୟନ୍ତ ଯେତେ ଦିନ ଆନ୍ଦେଳନ ହୋଇଛି, ସବୁଠି ସି.ପି.ଆଇ. ଆଗରେ ବା ନେତୃତ୍ୱରେ । ଗଂଜାମର ⁄କ ଗୋବିନ୍ଦ ପ୍ରଧାନ, ⁄କ ସାଧୁ ମହାନ୍ତି, ⁄କ ଦଣ୍ଡପାଣି ସ୍ୱାଇଁ, ⁄କ ଲକ୍ଷ୍ମଣ ମହାପାତ୍ର, ⁄କ ହରିହର ଦାଶ, କ. ଦ୍ୟୁତିକୃଷ୍ଣ ପଣ୍ଡା ଓ ⁄କ ବିଶ୍ୱନାଥ ସାହୁ ପ୍ରଭୃତି ଅନେକ ସି.ପି.ଆଇକୁ ଏକ ଗଣ ପାର୍ଟିରେ ପରିଣତ କରିବାର ଐତିହାସିକ ଭୂମିକା ନିର୍ବାହ କରିଛନ୍ତି । କିନ୍ତୁ ସେ ସମସ୍ତଙ୍କ ଭିତରେ ⁄ କ. ବିଶ୍ୱନାଥ ସାହୁଙ୍କର ଏକ ବିଶେଷ ଓ ସ୍ୱତନ୍ତ୍ର ଭୂମୀକା ରହିଛି । ସେ ଗ୍ରାମ ପଞ୍ଚାୟତରେ ସରପଞ୍ଚ ହେବାଠାରୁ ରାଜନିତୀ ଆରମ୍ଭ କରି ବିଧାନସଭାକୁ ନିର୍ବାଚିତ ହୋଇଥିଲେ, ସେତିକିରେ ତାଙ୍କର ରାଜନୀତି ସୀମିତ ନ ଥିଲା । ସେ କମ୍ୟୁନିଷ୍ଟପାର୍ଟିର ପ୍ରାୟ ୨୪ବର୍ଷ କାଳ ଜିଲ୍ଲା ସଂପାଦକ ଥିଲେ । ଏହି ସମୟରେ ପାର୍ଟିକୁ ଜିଲାବ୍ୟାପି ତିଆରି କରିବା, ବାସ୍ତବ ଶୃଙ୍ଖଳିତ ସଂଗ୍ରାମୀ ସଂଗଠନରେ ପରିଣତ କରିବା, ଗଂଜାମ ରାଜନୀତି ସି.ପି.ଆଇକୁ ଛାଡ଼ି କଳ୍ପନା କରାଯାଇ ପାରେନା, ଏହି ଅର୍ଥକୁ ବାସ୍ତବତାରେ ପରିଣତ କରିବା ପାଇଁ ⁄କ ବିଶ୍ୱନାଥ ସାହୁଙ୍କର ଭୂମୀକା ଅନସ୍ୱୀକାର୍ଯ୍ୟ ।

ମୋ ଜିଲ୍ଲା ଜଗତ୍‌ସିଂହପୁର ଜିଲ୍ଲା ସେ ଅନେକବାର ଗ୍ରସ୍ତ କରିଛନ୍ତି । ବିଶେଷକରି କ⁄ ଲୋକନାଥ ଚୌଧୁରୀ ଲୋକସଭା ପାଇଁ ପ୍ରାର୍ଥୀ ହୋଇ ଥିବାବେଳେ ସେ ବାଲିକୁଦା ନିର୍ବାଚନ ମଣ୍ଡଳୀ ଦାୟିତ୍ୱରେ ଥିଲେ । ତାଙ୍କ ଦାୟିତ୍ୱ କଥା ଶୁଣି ଆମେ ସବୁ ଜିଲ୍ଲବାଲା ଡ଼ରି ଛାନିଆ ହୋଇଗଲୁ । କାରଣ ଠିକ୍ କଥା ଓ ଠିକ୍ କାମ - ଇଯ୍ୟେ ଥିଲା ତାଙ୍କର ଉକ୍ତି । ନ ହେଲେ ବିଗିଡ଼ିଯିବେ । ନିର୍ବାଚନ ସମୟରେ ଯେହେତୁ ଏକ ପୁଂଜିବାଦୀ ଦଳ ସହିତ ମେଣ୍ଟ ହୋଇଥିଲା । ସେ ଦୃଷ୍ଟିରୁ ଏକ ଆଦର୍ଶସ୍ଥାନୀୟ ପାର୍ଟି ଭାବରେ ସି.ପିଆଇକୁ ଦୃଷ୍ଟାନ୍ତ ତିଆରି କରି ଲଢ଼ିବାକୁ ହେବ, ଏସବୁରେ ଯେମିତି କିଛି ବିଚ୍ୟୁତ ନ ହୁଏ । ସବୁ ସାଥୀମାନଙ୍କୁ ତାଗୀଦ୍ । ନିର୍ବାଚନ ସମୟରେ ସେ ଘର ଛାଡ଼ନ୍ତି, ନିର୍ବାଚନ ସରିଲେ ଘରକୁ ଫେରନ୍ତି । ସେ ନିଶ୍ଚୟ ଏକ ସ୍ୱତନ୍ତ୍ର ଚିରତ୍ର ଥିଲେ ସେ ଭଳି ସାଥୀ

ବା ନେତା ସି.ପି.ଆଇରେ ଆଉ ନାହାଁନ୍ତି - ମୁଁ ସେ କଥା କହୁନି । କିନ୍ତୁ ସବୁ ଦୃଷ୍ଟିରୁ ବିଚାର କଲେ ସେହିଭଳି ସାଥୀ ବା ନେତାଙ୍କର ସି.ପି.ଆଇରେ ଏକ ପ୍ରକାର ଅଭାବ ଦେଖାଦେଇଛି । ଏକଥା ସ୍ୱୀକାର କରିବାକୁ ହେବ । କାରଣ ପାର୍ଟି ଭିତରେ ତାଙ୍କର ବିଭିନ୍ନ ସମୟରେ ଭିନ୍ନ ମତ ଥିବାର ଦୃଷ୍ଟାନ୍ତ ମୁଁ ଦେଖିଛି । ବିଶେଷ କରି ନିର୍ବାଚନ ସମୟରେ । କିନ୍ତୁ ଥରେ ଯଦି ପାର୍ଟିରେ ବହୁ ମତରେ ନିଷ୍ପତ୍ତି ହୋଇଗଲା ( ନିଷ୍ପତ୍ତି ତାଙ୍କ ମତ ନ ହୋଇଥିଲେ ମଧ୍ୟ) ସେ ପ୍ରଥମ ଲୋକ ଯିଏ ଝୁଲା ଓ ଲୁଙ୍ଗି, ଗାମୁଛା ଧରି ଆଗ ସେ ନିଷ୍ପତ୍ତିକି କାର୍ଯ୍ୟକାରୀ କରିବାକୁ ବାହାରିଯିବେ, ତେଣୁ ସେ ଜଣେ ସ୍ୱତନ୍ତ୍ର ଚରିତ୍ର ବା ସ୍ୱତନ୍ତ୍ର ନେତା ଥିଲେ କମ୍ୟୁନିଷ୍ଟ ପାର୍ଟିର ।

ଏକ ସମୟରେ ସେ ବିଧାନସଭାରେ ସି.ପି.ଆଇର ଏକମାତ୍ର ବିଧାୟକ ଥିଲେ । ପାର୍ଟିର ସମ୍ମାନକୁ ଓ ଆଦର୍ଶକୁ ଟେକି ଧରିବା ତାଙ୍କର ପ୍ରଥମ କାମ ଥିଲା । ଓଡ଼ିଶା ସରକାର କୃଷକ ଆତ୍ମହତ୍ୟା ଗୁଣାତ୍ମକ ଭାବରେ ବୃଦ୍ଧି ପାଉଛି । ଋଣଭାରରେ ଚଳିତଳାନ୍ତି ଓ ଫସଲ ହାନିରେ ମର୍ମାହତ ଚାଷୀ ଜୀବନ ଓ ପରିବାର ପ୍ରତି ମମତା ହରାଇ ବାଧ୍ୟ ହୋଇଛି ଆତ୍ମହତ୍ୟା କରିବାପାଇଁ । ସରକାରୀ ନୀତି ଚାଷୀକୁ ଆତ୍ମହତ୍ୟା କରିବାକୁ ବାଧ୍ୟ କରିଛି । ଠିକ୍ ଏତିକିବେଳେ ବିଶ୍ୱନାଥ ବାବୁ ଭାରି ମନେ ପଡନ୍ତି । ତାଙ୍କ ସଂଗଠନ ତାଙ୍କୁ ମନେ ପକାଉଛନ୍ତି । ଶ୍ରଦ୍ଧାଞ୍ଜଳି ସଭା ଆୟୋଜନ କରିଛନ୍ତି ତେଣୁ ମୁଁ ଆଶ କରିବି ତାଙ୍କର ଅଧୁରା କାମକୁ ତାଙ୍କ ସଂଗଠନ କୃଷକସଭା ଭବିଷ୍ୟତରେ ପୁରା କରିବ ।

ତାଙ୍କର ଅମ୍ଳାନ ସ୍ମୃତିପ୍ରତି ମୋର ଗଭୀର ଶ୍ରଦ୍ଧାଞ୍ଜଳି କ. ବିଶ୍ୱନାଥ ସାହୁ - ଅମର ରହେ !



# ସେ ଥିଲେ କମ୍ୟୁନିଷ୍ଟ ବିଚାରଧାରାର ଦୃଢବିଶ୍ୱାସୀ

- ଏନ୍. ନାରାୟଣ ରେଡ଼ି

ବିଶ୍ୱନାଥବାବୁ ଆମ୍ଭକୁ ଛାଡି ଚାଲିଗଲେ । ବିଶ୍ୱନାଥ ବାବୁଙ୍କ ପୂର୍ବରୁ ମଧ ଅନେକ ଏପରି ଚାଲିଯାଇଛନ୍ତି । ଆମକୁ ମଧ ଯିବାକୁ ହେବ ।ଏହା ଅନିବାର୍ଯ୍ୟ । କେବଳ ଏତିକି ବିଚାରର ବିଷୟ ଯେ, ଆମ୍ଭେ କେହି ବିଶ୍ୱାସ କରୁନଥିଲୁ, ବିଶ୍ୱନାଥବାବୁ ଏହି ସମୟରେ ଚାଲି ଯିବେ । ତା'ର କାରଣ, ତାଙ୍କର ଦେହ ଖରାପ ଥିବା କଥା ଆମେ କେବେ ଶୁଣିନାହୁ । ଆଜିକାଲି ଇଚ୍ଛା ନ ଥିଲେ ଆମେ କୌଣସି କାର୍ଯ୍ୟରେ ଦେହ ଟିକେ ଭଲ ନାହିଁ ବୋଲି ବାହାନା କରୁ । ସେ ବାହାନା କିମ୍ବା ସ୍ୱାସ୍ଥ୍ୟ ଖରାପ ଥିବା ନେଇ କେବେ ତାଙ୍କ ପାଟିରୁ ଶୁଣିନାହୁ । ଏହା ହିଁ ବିଶ୍ୱନାଥ ବାବୁଙ୍କ ସଂଗଠନ ପ୍ରତି ନିଷ୍ଠା ଓ ଆତ୍ମବିଶ୍ୱାସ ।

ବିଶ୍ୱନାଥବାବୁଙ୍କ ସହ ଦୀର୍ଘଦିନର ସଂପର୍କ, ସେ ସବୁ ଘଟଣା ଉଲ୍ଲେଖ କଲେ ଗୋଟାଏ ବହି ଲେଖା ହେବ । ୧୯୬୬-୬୭ ବିଧାନ ସଭା ନିର୍ବାଚନ, ମୁଁ ଚତୁର୍ଥ ଶ୍ରେଣୀ ପାସ୍ କରିଥାଏ କିମ୍ବା ପଞ୍ଚମ ଶ୍ରେଣୀରେ ନାମ ଲେଖାଇ ଥାଏ, ଠିକ୍ ମନେ ପଡୁନି । ଚମାଖଣ୍ଡି ୟୁ.ପି. ସ୍କୁଲ ନିକଟରେ ଚାଲିଥାଏ ନିର୍ବାଚନୀ ସଭା । ପ୍ରୟାତ ସାଥୀ ଲକ୍ଷ୍ମଣ ମହାପାତ୍ର ଆମ ପାର୍ଟିର ପ୍ରାର୍ଥୀ, ସ୍ୱର୍ଗୀୟ ହରିମୋହନ ପାଢୀ କଂଗ୍ରେସର ପ୍ରାର୍ଥୀ, ସ୍ୱର୍ଗୀୟ ମହନ୍ତ ରାମାନୁଜ ଦାଶ ସ୍ୱତନ୍ତ୍ର ଦଳର ପ୍ରାର୍ଥୀ ଥାଆନ୍ତି ।

ମୁଁ ପ୍ରଥମ ଥର ପାଇଁ ବାପାଙ୍କ ସହ ଉକ୍ତ ସଭାକୁ ଯାଇଥାଏ । ସେତେବେଳେ ବିଦ୍ୟୁତ ଚାଳିତ ଡାକବାଜି ଯନ୍ତ୍ର ନଥାଏ, ଟିଣରେ ତିଆରୀ ମେଗାଫୋନ୍‌ରେ କିଏ କଣ ସବୁ ଭାଷଣ ଦେଲେ ମୋର କିଛି ମନେ ନାହିଁ । ସଭାପରେ ଆମଘରେ ସବୁନେତୃତ୍ୱ ଏକାଠି ହେଲେ, ଚଣା – ଉପମା ଖାଇଲେ । ମୁଁ ବାପାଙ୍କୁ ପଚାରିଲି ବାପା 'ଏ ଲୋକଟି କିଏ ? ବାପା ପଚାରିଲେ କି କ'ଣ ହେଲା ? ମୁଁ କହିଲି ଏ ଲୋକଟି ଭଲ କହିଲେ । ତୋତେ କେଉଁ କଥାଟି ଭଲ ଲାଗିଲା । ନା ସେ ଯେଉଁ ଦୁଇଟି କୁକୁଡା ଲଢେଇ କଥା, ଜିତିଥିବା କିମ୍ବା ହାରିଥିବା ଦୁଇଟିର କ୍ଷତି, ଉଦାହରଣ ଦେଲେ । ବାସ୍ତବିକ ସେହି ସମୟରେ ଆମ ଗାଁରେ ଦୁଇଟି ଦଳ ଥାଏ । ଗୋଟାଏ ଦଳ ବଡପାର୍ଟି, ଆମର ସାନ ପାର୍ଟି, ଅନେକ ସମୟରେ ଗାଁରେ ସଂଘର୍ଷ ହୁଏ । ଆମ ଦଳକୁ ବିଶ୍ୱନାଥ ବାବୁଙ୍କ କକା ନଟବର ସାହୁ ସାହାଯ୍ୟ କରୁଥିଲେ ଏବଂ ଆର ଦଳକୁ ନଟବର ସାହୁଙ୍କ ଶଳା ଲକ୍ଷ୍ମୀ ପାଣିଗ୍ରାହୀ ସମର୍ଥନ କରୁଥିଲେ । ଆମ ସାନ ଦଳର ସମସ୍ତେ କମ୍ୟୁନିଷ୍ଟ ଦଳର ସମର୍ଥକ । ବାପାଙ୍କ ସହ ଚାରି, ପାଞ୍ଚ ଜଣ ପାର୍ଟି ସଭ୍ୟ, ଅନ୍ୟମାନେ ସମର୍ଥକ ଭାଗଚାଷୀ । ଛତ୍ରପୁର ଅଞ୍ଚଳରେ ଅନେକ ଗାଁ ମାନଙ୍କରେ ସଂଘର୍ଷ ଲାଗି ରହିଥାଏ । ଏ ସଂଘର୍ଷ ପଛରେ ଜମିଦାର କିମ୍ବା ଲୋକଙ୍କୁ ଉଚ୍ଚ ହାରରେ କଳନ୍ତର ନେଇ ଋଣ ଦେଉଥିବା ସାଉକାରଙ୍କ ହାତ ଥାଏ । ପ୍ରୟାତ ସାଥୀ ଲକ୍ଷ୍ମଣ ମହାପାତ୍ର, ବିଶ୍ୱନାଥବାବୁ, ହରେକୃଷ୍ଣ ପାଣିଗ୍ରାହୀ, ଆର. ଜଗାରାଓ (କୋର୍ଜିବାବୁ), ଗାଁ ଗାଁ ବୁଲି ଗରବ ଲୋକଙ୍କ ମଧରେ, ଚାଷୀ ଚାଷୀଙ୍କ ମଧରେ ସଂଘର୍ଷ ଉଭୟଙ୍କ କ୍ଷତି ସାଧନ

କରିବ, ପିଲାମାନେ ପାଠ ପଢି ଆଉ ଆଗକୁଯାଇ ପାଇବେ ନାହିଁ, କୋର୍ଟ କଚେରୀ ଦ୍ୱାରା ସର୍ବସ୍ୱାନ୍ତ ହେବ, ବିଶେଷ କରି ଏହି କଥା ବୁଝାଉଥିଲେ । ସେହି ସମୟରେ ଆଜି ପରି ରାଜନୈତିକ ସଚେତନତା ଲୋକଙ୍କ ଭିତରେ ନଥିଲା ବା ଏପରି ରାଜନୈତିକ ସଂଘର୍ଷ ମଧ ନଥାଏ । ଛତ୍ରପୁର ଅଞ୍ଚଳର ବଣବୁଲ୍ଲାପଲ୍ଲୀ, କରାପଲ୍ଲୀ, ନାଉଳି, ତୋଟାପଲ୍ଲୀ, କରାତୋଳି ପୁଇଁତୋଳାପରି ଅନେକ ଗାଁ ଗୁଡିକରେ ଏକତା ଓ ଶାନ୍ତି ପ୍ରତିଷ୍ଠା କରି ପାର୍ଟି ଗଢାଯାଇଛି । ଗାଁ ଗୁଡିକରେ ଏକତା ପ୍ରତିଷ୍ଠା କରିବା ଏବଂ ନିଶା ଅଭ୍ୟାସ ତ୍ୟାଗ କରି ପୁଅ, ଝିଅଙ୍କୁ ପାଠ ପଢାଅ ବୋଲି  ବିଶ୍ୱନାଥବାବୁ ସମଗ୍ର ଜିଲ୍ଲା ବୁଲି କହୁଥିଲେ । ପ୍ରାୟ ୨୩ ବର୍ଷ ଜିଲ୍ଲା ପାର୍ଟିର ସଂପାଦକ ରହି ସମଗ୍ର ଜିଲ୍ଲା ପାରଳାଖେମୁଣ୍ଡିଠାରୁ ଆରମ୍ଭ କରି ମୋହନା, ଉଞ୍ଜନଗର, ଜଗନ୍ନାଥପ୍ରସାଦ, ଆସ୍କା, ଶେରଗଡ, ଦିଗପହଣ୍ଡି, ସାନଖେମୁଣ୍ଡି, ଗୋପାଳପୁର, ଛତ୍ରପୁର, ଗଂଜାମ, ରମ୍ଭା, ପୁରୁଷୋତ୍ତମପୁର ସମଗ୍ର ଜିଲ୍ଲା ଯାଇ ବୁଲିଛନ୍ତି ଛାତ୍ରଜୀବନରୁ ଜୀବନରେ ଶେଷ ଦିନ ପର୍ଯ୍ୟନ୍ତ ପ୍ରାୟ ସତୁରୀ ବର୍ଷର ରାଜନୈତିକ ଜୀବନ । ଆଜିକାର ଅବସ୍ଥା ଭିତରେ ଏହି ସବୁ ଘଟଣା ଓ ତ୍ୟାଗର ଘଟଣାବହୁଳ ଜୀବନ ବିଷୟ ଆମ ଚିନ୍ତାର ବାହାରେ । ସଂପତ୍ତି କରିବାର ମୋହନଥାଏ, ସେବା ବେଳେ ଟିକେ ମଧ ମନରେ ଅହଂଭାବ ନଥାଏ । ରାଜନୈତିକ ଝଡ, ଝଂଜାକୁ ମୁକାବିଲା କରିଛନ୍ତି । ଅନେକବାର ହତ୍ୟାର ଧମକ ପାଇଛନ୍ତି । ବାରମ୍ବାର ମିଛ କେଶ ରୁଜୁ ହୋଇଛି । ଜେଲ୍ ଯାଇଛନ୍ତି । ଦୁଇ ଦୁଇ ଥର ମିଛ ହତ୍ୟା ମକଦ୍ଦମାରେ ଜଡିତ କରାଗଲା । ୧୯୪୯ ଠାରୁ ୧୯୮୩ ପର୍ଯ୍ୟନ୍ତ ବାରମ୍ବାର ଜେଲ ଯାଇଛନ୍ତି । ଛାତ୍ର ଆନ୍ଦୋଳନରେ ପୁରୁଷୋତ୍ତମପୁର ହାଇସ୍କୁଲ ଠାରୁ ବ୍ରହ୍ମପୁର ଖଲ୍ଲିକୋଟ କଲେଜ ଛାତ୍ର ଥିବାବେଳେ ଛାତ୍ର ସଂଘର ନେତୃତ୍ୱ ଏବଂ ସମଗ୍ର ରାଜ୍ୟରେ କୃଷକ ଆନ୍ଦୋଳନରେ ଅଂଶ ଗ୍ରହଣ କରିଛନ୍ତି । କୃଷକ ନେତା ଗୋବିନ୍ଦ ପ୍ରଧାନ, ହରିହର ଦାସ, ଗଙ୍ଗାଧର ପାଇକରାୟ, ମୋହନ ଦାସ, ସାଧୁ ମହାନ୍ତି, ଗୁରୁଚରଣ ପଟ୍ଟନାୟକ, ରାମଚନ୍ଦ୍ର ମିଶ୍ର, ଗତିକୃଷ୍ଣ ସ୍ୱାଇଁ, ସଦାନନ୍ଦ ମହାନ୍ତି, ସୂର୍ଯ୍ୟନାରାୟଣ ଆଚାରୀ ଏହି ସମସ୍ତ ପ୍ରଖ୍ୟାତ ନେତୃବୃନ୍ଦଙ୍କ ସହ ଏବଂ ସାଥୀ ଦ୍ୱିତିକୃଷ୍ଣ ପଣ୍ଡା, ସାଥୀ ସୋମନାଥ ପାତ୍ରଙ୍କ ପରି ଅନେକ ନେତାଙ୍କ ସହ ସାରା ଓଡିଶା ବୁଲିଛନ୍ତି  । କୃଷକ ସଭାର ରାଜ୍ୟ ସଂପାଦକ ଓ ସଭାପତି ଦାୟିତ୍ୱ ତୁଲାଇଛନ୍ତି । କୃଷକ ସଭା (A.I.K.S) ର କେନ୍ଦ୍ର କାର୍ଯ୍ୟକାରୀ କମିଟିର ସଭ୍ୟ ମଧ ରହିଛନ୍ତି । ତେଲେଙ୍ଗାନା ଚାଷି ଆନ୍ଦୋଳନର ନେତା ସାଥୀ ସି. ରାଜେଶ୍ୱର ରାଓ, କମ୍ୟୁନିଷ୍ଟ ନେତା ବିଶ୍ୱନାଥ ମୁଖାର୍ଜୀ, ସାଥୀ ଏ.ବି. ବର୍ଦ୍ଧନ, ସାଥୀ ଲୋକନାଥ ଚୌଧୁରୀଙ୍କ ସହ ଘନିଷ୍ଠ ସଂପର୍କ ଥାଏ । ବିଶ୍ୱନାଥ ବାବୁଙ୍କ ସହ ମୁଁ ପ୍ରାୟ ଚାଳିଶି ବର୍ଷରୁ ଉର୍ଦ୍ଧ୍ୱ ସମୟ ଧରି ବିଭିନ୍ନ ରାଜନୈତିକ କାର୍ଯ୍ୟକ୍ରମରେ ଯୋଗଦେଇଛି । ମିଥ୍ୟା କେଶରେ ମଧ ଦୁଇଥର ବ୍ରହ୍ମପୁର ଜେଲରେ ଉଭୟ ରହିଛୁ । ଅତି ନିକଟରୁ ଦେଖିଛି ସେ ସାଧାରଣ ମଣିଷର ସ୍ୱାର୍ଥପାଇଁ କେତେ ବ୍ୟାକୁଳ ଥିବା ମୁଁ ନିଜେ ଦେଖିଛି । ପ୍ରତିବର୍ଷ ଜାନୁଆରୀ ଏକ ତାରିଖରେ ପାର୍ଟିର ସଭ୍ୟ ଚାନ୍ଦା ପୈଠ କରନ୍ତି । ପାର୍ଟିର ମୁଖପତ୍ର "ନୂଆ ଦୁନିଆ"ର ଗ୍ରାହକ ସଂଗ୍ରହ ଅଭିଯାନରେ ଅନେକ ଥର ରାଜ୍ୟରେ ସେ ପ୍ରଥମ ହୋଇଛନ୍ତି । ପାର୍ଟିର ସଂଗଠନ ନୀତିର ବିଚ୍ୟୁତି ହେଲେ ସେ କଦାଚିତ୍ ସାଲିଶ୍ କରନ୍ତି ନାହିଁ  । ଜୀବନର ଚଲାପଥରେ ଅନେକ ବାଧା ପ୍ରତିବନ୍ଧକର ସମ୍ମୁଖୀନ ହୋଇଛନ୍ତି କିନ୍ତୁ କେବେ ହତାଶ୍ ହୋଇନାହାନ୍ତି କି ପଥ ହୁଡିନାହାନ୍ତ ।

ଦୁଇ ବର୍ଷ ତଳେ ପଦଯାତ୍ରା କାର୍ଯ୍ୟକ୍ରମରେ ଯୋଗ ଦେଇ ଅନେକ ବାଟ ଚାଲିଲେ । ପାଦରେ ଫୁଟୁକା ହୋଇଗଲା । ଆମେ ସମସ୍ତେ ଅନୁରୋଧ କଲୁ, ଗାଡିରେ ବସିବା ପାଇଁ ସେ ମନାକଲେ । ପଦଯାତ୍ରାର ଅର୍ଥ ପାଦରେ ଚାଲିବା କମ୍ୟୁନିଷ୍ଟ ପାର୍ଟିର ବାର୍ତ୍ତା ଲୋକଙ୍କୁ ଜଣାଇବା, ଆଉ ଗାଡିରେ ବସିବା କଥା କୁଆଡେ ଆସିଲା ? ଆମେ ନିରୁତ୍ତର, ସେ ସେପରି ହିଁ ଚାଲିଥାନ୍ତି । ଏହା ହିଁ ସେ ମହାନ ସାଥିଙ୍କର ସଂକଳ୍ପବଦ୍ଧତା, ପାର୍ଟି ନିଷ୍ପତ୍ତି ପ୍ରତି ଆନ୍ତରିକତା ।

କେବଳ ସେତିକି କହିଦେଲେ ହେବ ନାହିଁ । ସେ ଦୁଇଥର ଛତ୍ରପୁରରୁ ବିଧାନ ସଭାକୁ ସଭ୍ୟ ନିର୍ବାଚିତ ହୋଇଥିଲେ । ଅନେକ ଉନ୍ନୟନ ମୂଳକ କାମ ସହ ରାଜ୍ୟର ଜଳସେଚନ, ଭାଗଚାଷୀର ଅଧିକାର, ବେକାର ସମସ୍ୟାର ସମାଧାନ, ଶିକ୍ଷକ ଓ ଶିକ୍ଷା ସମସ୍ୟା ସମାଧାନ ପାଇଁ ବିଧାନସଭାରେ ଅନେକ ପ୍ରସ୍ତାବ ରଖିଛନ୍ତି । ରମ୍ଭା, ହୁଗୁଳାପଟା, ମୈଳାଭଂଜା, ଚମାଖଣ୍ଡି, ଖଣ୍ଡଦେଉଳି, କରାପଲ୍ଲି, କାଳିପଲ୍ଲି, ଭିକାରୀପଲ୍ଲୀ, ଚମାଖଣ୍ଡି ପରି ଅନେକ ସ୍କୁଲ, କଲେଜ ପ୍ରତିଷ୍ଠାରେ ନିଜର ପଦଚିହ୍ନ ରଖିଯାଇଛନ୍ତି । ରାଜନୈତିକ ଜୀବନରେ ନୀତି ସହ ସାଲିଶ କରିନାହନ୍ତି । ଦୁର୍ନୀତୀର କୌଣସି ଛିଟା  କେବେ ଲାଗି ନାହିଁ । ନିଜର ରାଜନୈତିକ ଶତ୍ରୁ ମଧ କେବେ ବିଶ୍ୱନାଥବାବୁଙ୍କ ଉପରେ ଦୁର୍ନିତୀର ଅଭିଯୋଗ ଆଣିନାହାନ୍ତି ।

ବିଶ୍ୱନାଥବାବୁ ସେପରି ଜଣେ ନିଷ୍କଳଙ୍କ, ଦେଶବତ୍ସଳ ରାଜନେତା ଥିଲେ  । ସେ କରିଯାଇଥିବା, ଆମକୁ ଶିଖାଇ ଦେଇଥିବା ଉକ୍ତ କାର୍ଯ୍ୟ ଗୁଡିକୁ ଆଗେଇ ନେବା ମାଧମରେ ହିଁ ବିଶ୍ୱନାଥ ବାବୁଙ୍କୁ ଆମେ ଶ୍ରଦ୍ଧାଞ୍ଜଳି ଜଣାଇବା, ତାଛଡା ଅନ୍ୟ କିଛି ଉପାୟ ନାହିଁ । ଶେଷରେ ବିଶ୍ୱନାଥବାବୁ ମୋ ବାପା, ମୋ ଦୁଇବଡଭାଇ, ମୋର ଏବଂ ମୋ ପୁତୁରା, ଝିଆରୀଙ୍କର ନେତା  । ତାଙ୍କର ମୋ ବାପାଙ୍କ ସହିତ ଛାତ୍ର ଜୀବନରୁ ସଂପର୍କ । ସେ ବିଷୟରେ ପୁଣି କେବେ ଲେଖିବି । ବର୍ତ୍ତମାନ ଏତିକିର ଶେଷ କରି ମୋ ହୃଦୟର ଭକ୍ତିପୂତ ଶ୍ରଦ୍ଧଞ୍ଜଳି  ଜଣାଉଛି  ।

ବିଶ୍ୱନାଥ ବାବୁ ଅମର ରହେ !

ଲାଲ୍ ସଲାମ୍ !

# କିଛି ସ୍ମୃତି କିଛି ଅଭିବ୍ୟକ୍ତି

ଶିବାଜୀ ପଟ୍ଟନାୟକ

ସାଥି ବିଶ୍ୱନାଥ ସାହୁଙ୍କ ବିୟୋଗରେ ସାଧିନତାପ୍ରାପ୍ତି କାଳ କମ୍ୟୁନିଷ୍ଟ ଆନ୍ଦୋଳନର ସେ଼ ଅତୀତ ସହ ଏକ ଯୋଗସୁତ୍ର ଛିନ୍ନ ହୋଇଗଲା । ଛାତ୍ର ଜୀବନରୁ ୧୯୪୫-୪୬ ବେଳର ଶେଷ ସାଧିନତା ସଂଗ୍ରାମର ଜୁଆରରେ ସେ ଆସିଥିଲେ ତାର ଏକ ଅଗ୍ରଗାମୀ ସ୍ରୋତ କମ୍ୟୁନିଷ୍ଟ ଆନ୍ଦୋଳନକୁ । ସାଧିନତା ସଂଗ୍ରାମ ବେଳର ସପ୍ନକୁ ସାକାର କରିବା ସହ ଗୋଟାଏ ଲମ୍ଫ ସେ ସମାଜବାଦ ଦିଗକୁ ଆଗେଇବା ପାଇଁ ସାଧୀନତା ପ୍ରାପ୍ତିପରେ କମ୍ୟୁନିଷ୍ଟ ପାର୍ଟି ଯେଉଁ ଦୁଃସାହାଶିକ ପଥ ଧରିଲା ସେଥିରେ ତାଙ୍କର କଲେଜ ପାଠ ପଢ଼ା ଡ଼ୋରୀ ବନ୍ଧାହେଲା । ସେଇ ୧୯୪୮ ମସିହାବେଳୁ ମୋର ତାଙ୍କ ସହ ପରିଚୟ ଓ ଘନିଷ୍ଠତା ।

୧୯୪୮ ନଭେମ୍ବରରେ ଛାତ୍ରଫେଡ଼େରେସନ୍‌ର ରାଜ୍ୟ ସମ୍ମିଳନୀ କଟକରେ ହେବା ପୂର୍ବରୁ ମୋତେ ପୁରୀ ଓ ବ୍ରହ୍ମପୁରକୁ ଯିବା ପାଇଁ କୁହାଗଲା । ସେତେବେଳେ ନିରୁପମା ରଥ ଛାତ୍ର ଫେଡ଼େରେସନ୍‌ର ରାଜ୍ୟ ସମ୍ପାଦକର ଦାୟିତ୍ୱ ନେଇଥିଲେ ହେଁ ପୂର୍ଣ୍ଣାନନ୍ଦ ଦାସ ଥିଲେ ମୁଖ୍ୟ ସଂଗଠକ, ସେ ମୋତେ ପଠାଇଲେ ଏ ଦୁଇ ଜିଲ୍ଲାରୁ ପ୍ରତିନିଧି ନିର୍ବାଚନର ପର୍ଯ୍ୟବେକ୍ଷକ ଭାବେ । ପୁରୀ କାମ ସାରି ବହ୍ମପୁରରେ ପହଞ୍ଚିଲା ବେଳକୁ ଦେଖିଲି ସାଥୀ ବିଶ୍ୱନାଥ ସାହୁଙ୍କ ବ୍ୟତିତ ଆଉ କେହି ନାହାଁନ୍ତି । ତାକରଡ଼ାରେ କଂଗ୍ରେସ ସରକାରର କୃଷକ ହତ୍ୟା ପରେ ଛାତ୍ର ନେତାମାନେ ମଧ ଦମନର ଶିକାର ହୋଇ କିଏ ଜେଲ୍‌ରେ ତ ଆଉ କିଏ ଅଜ୍ଞାତବାସରେ । ଗୋଇନ୍ଦା ପୋଲିସ୍ ଆମକୁ ଗୋଡ଼େ ଗୋଡ଼େ, ଜଗିଥାଅନ୍ତି ତା ସତ୍ତ୍ୱେ ସାଥୀ ବିଶ୍ୱନାଥ ସାହୁ ଏକ ବୈଠକ କରାଇଥିଲେ ଏବଂ ପ୍ରତିନିଧି ନିର୍ବାଚନ ହୋଇ ରାଜ୍ୟ ସମ୍ମଳନୀକୁ କଟକ ଆସିବାର ଆୟୋଜନ ହେଲା ।

ରାଜ୍ୟ ସମ୍ମିଳନୀରେ ସାଥି ବିଶ୍ୱନାଥ ସାହୁ ହିଁ ପତାକା ଉତ୍ତୋଳନ କରିବାର ମର୍ଯ୍ୟାଦା ଲାଭ କରିଥିଲେ । କାରଣ ସେ ଆସିଥିଲେ ଗଞ୍ଜାମ ଜିଲ୍ଲାରୁ । ଗଂଞ୍ଜାମ ଜିଲ୍ଲାରେ କମ୍ୟୁନିଷ୍ଟ ପାର୍ଟି ଓ କୃଷକ ଆନ୍ଦୋନଳ ସହ ଛାତ୍ର ଆନ୍ଦୋଳନ ମଧ ସେତେବେଳେ ଥିଲା ସବୁଠାରୁ ଶକ୍ତିଶାଳୀ । ୧୯୪୭ ରେ ବ୍ରହ୍ମପୁରରେ ହୋଇଥିବା ଛାତ୍ର ଫେଡ଼େରେସନର ଐତିହାସିକ ସମ୍ମିଳନୀ ଓ ରାଜ୍ୟ ବ୍ୟାପି ୟୁନିୟନ ଜାକ ବିରୋଧି ଛାତ୍ର ଆନ୍ଦୋଳନ ପରେ ଗଂଞ୍ଜାମରେ ହୋଇଥିଲା "ନୋ ଡ଼ୋନେସନ" ଆନ୍ଦୋଳନ । ଜଣେ ଛାତ୍ର ଏକାଦଶ ଶ୍ରେଣୀ ପର୍ଯ୍ୟନ୍ତ ସବୁ ପରିକ୍ଷାରେ ଉର୍ତ୍ତିର୍ଣ୍ଣ ହେବା ପରେ ମ୍ୟାଟ୍ରିକୁଲେସନ ଫାଇନାଲ ପରୀକ୍ଷା ଦେବା ତା ଅଧିକାର । ତା ପୂର୍ବରୁ ସ୍କୁଲର ଟେଷ୍ଟ ପରୀକ୍ଷା ସେ ତାକୁ ଅଟକାଯାଇ ପାରିବ ନାହିଁ । ଏହି ଦାବି ଉପରେ ଦିଲ୍ଲସାରା ସ୍କୁଲଛାତ୍ରମାନଙ୍କ ଆନ୍ଦୋଳନ ବିଜୟ ମଣ୍ଡିତ ହୋଇ ଛାତ୍ର ଫେଡ଼େରେସନର ଶକ୍ତି ବୃଦ୍ଧି କରିଥାଏ । ମାତ୍ର ୧୯୪୮ ଫେବୃୟାରୀରେ କମ୍ୟୁନିଷ୍ଟ ପାର୍ଟିର ୨ୟ କଂଗ୍ରେସ ପରେ ନଇଁ ଆସିଥିବା ଦମନ ପିଡନ ଯୋଗୁ ସଭାବିକ କାର୍ଯ୍ୟକ୍ରମ କଷ୍ଟକର ହୋଇଥାଏ । ଏହିପରି ଏକ ସମୟରେ କଟକରେ ଅନୁଷ୍ଠିତ ରାଜ୍ୟ ସମ୍ମିଳନୀରେ ସଦାନନ୍ଦ

ମହାନ୍ତିଙ୍କୁ ରାଜ୍ୟ ସମ୍ପାଦକ ଭାବେ ନିର୍ବାଚନ କରାଯାଇଥିଲା । ସେତେବେଳକୁ ସେ ଥିଲେ ଜେଲେରେ । ସେ ସମ୍ମିଳନୀ ଥିଲା ଚତୁର୍ଦ୍ଦିଗର ଅକ୍ରମଣକୁ ଅତିକ୍ରମ କରିବାପାଇଁ ସଂକଳ୍ପର ସମ୍ମିଳନୀ ।

ସେଇ ସମ୍ମିଳନୀର ଅଳ୍ପଦିନପରେ ୧୯୪୯ ମାର୍ଚ୍ଚ ୯ତାରିଖରେ ରେଳବାଇ ଧର୍ମଘଟ ସହ ଦେଶବ୍ୟାପି ସାଧାରଣ ଧର୍ମଘଟ ମାଧମରେ ଏକ ଜନ ଜାଗରଣ ପାଇଁ କମ୍ୟୁନିଷ୍ଟ ପାର୍ଟିର ଡ଼ାକରା ଯୋଗୁ ଯେଉଁ ବ୍ୟାପକ ଗିରଫଦାରୀ ଚାଲିଲା ତାର ଶୀକାର ହେଲେ ସାଥୀ ବିଶ୍ୱନାଥ ସାହୁ । ଅଜ୍ଞାତବାସ ଓ ଜେଲ ଜୀବନ ପରେ ଆରମ୍ଭ ହେଲା ତାଙ୍କ ପୁରା ସମୟ କର୍ମୀର ଜୀବନ । ଦୀର୍ଘ ୬୫ ବର୍ଷର ଏ କର୍ମମୟ ଜୀବନ । ସ୍ୱାଭାବିକ ଭାବେ ବହୁ ଉତ୍ଥାନ ପତନ ମଧ ଦେଇ ତାଙ୍କୁ ଯିବାକୁ ପଡ଼ିଛି ।

ଅବିଭକ୍ତ କମ୍ୟୁନିଷ୍ଟ ପାର୍ଟିର ବିଭାଜନ ପରେ ତାଙ୍କ ସହଯୋଗ ସମ୍ପର୍କ ପ୍ରାୟ ନଥିଲା ୧୯୬୪ରୁ ୧୯୭୮ ପର୍ଯ୍ୟନ୍ତ । ପୁଣି ଏକାଠି ହୋଇଛୁ କୃଷକ ଆନ୍ଦୋଳନରେ । ନିଳମଣୀ ରାଉରାୟ ମନ୍ତ୍ରୀମଣ୍ଡଳ ଭୂସଂସ୍କାର ଆଇନରେ ପରିବାରର ସଂଜ୍ଞା ପରବର୍ତ୍ତନ ନାମରେ ଭୂସ୍ୱାମୀମାନଙ୍କୁ ସୁବିଧା ଦେବାକୁ ବସିଥିବା ବେଳେ ତା ବିରୁଦ୍ଧରେ ଏକାଠି ହୋଇ ରାଜ୍ୟସ୍ତରୀୟ କନ୍‌ଭେନସନ ଓ ବିଶାଳ କୃଷକ ବିକ୍ଷୋଭମାନ ସଂଗଠିତ କରିଛୁ ପରବର୍ତ୍ତି ସମୟରେ ମିଳିତଭାବେ ସଂଗଠିତ କରିଛୁ, ରାଜ୍ୟସ୍ତରୀୟ ବିଶାଳ କୃଷକ ସମାବେଶ ।

୧୯୭୭ରେ ସେ ଛତ୍ରପୁରରୁ ଏମ୍.ଏଲ.ଏ ଭାବେ ନିର୍ବାଚନ ହୋଇଥିଲେ । ମୁଁ ଥାଏ ପାର୍ଲାମେଣ୍ଟ ସଭ୍ୟ । ଦୁହେଁ ଥିଲୁ ରାଜ୍ୟ ସରକାରଙ୍କ ଜଳସେଚନ ପରାମର୍ଶଦାତା କମିଟିରେ । 'ସମାଜ' ସମ୍ପାଦକ ପଦ୍ମଶ୍ରୀ ରାଧାନାଥ ରଥ ମୋତେ ମହାନଦୀ ଉପରେ ମଣିଭଦ୍ରା ଜଳସେଚନ ପ୍ରକଳ୍ପର ଚିଠାଥିବା ପ୍ରସ୍ତାବ ଦେଇ ଏହି ପ୍ରକଳ୍ପର ରୂପାୟନ ପାଇଁ ଉଦ୍ୟମ କରିବାକୁ ପରାମର୍ଶ ଦେଇଥିଲେ । ଏଥିରେ ବଉଦ ଅଦୌ କ୍ଷତିଗ୍ରସ୍ତ ନ ହୋଇ ମାତ୍ର ୧୨ଖଣ୍ଡ ଗ୍ରାମ କ୍ଷତିଗ୍ରସ୍ତ ହୋଇଥାଆନ୍ତା । ଅଥଚ ନୟାଗଡ଼ ଓ ଖୋର୍ଦ୍ଧା ସହ ଗଂଜାମଜିଲ୍ଲାର ବିସ୍ତୃତ ଅଞ୍ଚଳ ଜଳସେଚିତ ହୋଇଥାଆନ୍ତା । ମୁ ପ୍ରସ୍ତାବ ଦେବାପରେ ସାଥି ବିଶ୍ୱନାଥ ସାହୁ ଜଣାଇଲେ ଦୃଢ଼ ସମର୍ଥନ, ମାତ୍ର ପଶ୍ଚିମ ଓଡ଼ିଶାର ସଭ୍ୟମାନେ ଏହାର ଘୋର ବିରୋଧ କରି ଓଡ଼ିଶାରୁ ଅଲଗା ହୋଇଯିବାର ଧମକ ଦେଲେ । ଏ ପ୍ରକଳ୍ପ ଅପେକ୍ଷା ଓଡ଼ିଶାର ଏକତା ଓ ଅଖଣ୍ଡତା ବେଶି ମୂଲ୍ୟବାନ ବୋଲି ଆମେ ଦୁହେଁ ସ୍ଥିର କରି ସେ ପ୍ରସ୍ତାବ ପ୍ରତ୍ୟାହାର କରି ଆଣିଲୁ । ନଦୀ ବନ୍ଧଯୋଜନା, ଉଠାଜଳସେଚନ ଓ ଜଳାଶ୍ରୟ ନିର୍ମାଣ ମାଧମରେ ସାରାରାଜ୍ୟର ଚାଷ ଜମିକୁ ଜଳ ସେଚିତ କରିବା ଦୃଷ୍ଟିରୁ ଏକ ମାଷ୍ଟର ପ୍ଲାନ ଚିଠା କରି ଅଗ୍ରାଧିକାର ଭିତିରେ କାମ କରିବାକୁ ଆମେ ପ୍ରସ୍ତାବ ଦେଲୁ । ଜଳସମ୍ପଦ ମନ୍ତ୍ରୀ ପ୍ରହ୍ଲାଦ ମଲ୍ଲିକ ଏ ପ୍ରସ୍ତାବ ଗ୍ରହଣ କରି ଏ ବିଷୟରେ ବିଶେଷଜ୍ଞ ମାନଙ୍କୁ ଜଡ଼ିତ କରି ଏକ ସମ୍ମିଳନୀ କରାଇଥିଲେ । ଏକ ପ୍ରାରମ୍ଭିକ ଚିଠା ମଧ ହେଲା, ମାତ୍ର ମନ୍ତ୍ରୀମଣ୍ଡଳ ଭାଙ୍ଗିଯିବାରୁ ଆଉତାହା ଆଗୋଇଲା ନାହିଁ । ଏବେ ଜଳସେଚନ କାମରେ ଏକ ପ୍ରକାର ଡ଼ୋରୀ ବାନ୍ଧିଦିଆ ଯାଇ ତଥା କଥିତ ସଂସ୍କାର କାର୍ଯ୍ୟକ୍ରମର ପାଣି-ପଞ୍ଚାୟତ ପ୍ରହସନ ଚାଲିଛି । ମରୁଡ଼ିରେ ଚାଷିର ଫସଲ ଉଜୁଡ଼ି ଯାଉଛି ।

ସେହି କୃଷକମାନଙ୍କ ପାଇଁ ଲଢେଇ ଚାଲାଇଥିଲେ ସାଥୀ ବିଶ୍ୱନାଥ ସାହୁ । କୃଷକ ଆନ୍ଦୋଳନ ଯୋଗୁ ତାକରଡ଼ା କୃଷକ ହତ୍ୟା ବୋଲାଉ ଥିବା ସେ ମୁସ୍ତାଦାରୀ ପ୍ରଥା ଓ ପୁରୁଣା ଜମିଦାରୀ ବ୍ୟବସ୍ଥା ଯାଇଛି, ତେବେ ବି ସମନ୍ତବାଦୀ ଶୋଷଣରୁ ଚାଷିମାନେ ମୁକ୍ତ ନୁହନ୍ତି । ତା ଉପରେ ମାଡ଼ିବସିଛି ଶୋଷଣ, ଦେଶୀୟ କର୍ପୋରେଟ୍ ଜଗତର ଶୋଷଣ ସହ ବିଶ୍ୱ ପୁଞ୍ଜିବାଦର ନବ୍ୟ ଉଦାରବାଦୀ ଶୋଷରେ ଚାଷୀମାନେ ତଳିତଳାନ୍ତ । ହତାଶ ହୋଇ ଚାଷୀ ଯାଉଛି ଆତ୍ମହତ୍ୟାର ପଥରେ । ଚାଷୀ ଆତ୍ମହତ୍ୟାର ପ୍ରତିକାର ପନ୍ଥା ନିର୍ଣ୍ଣୟ ପାଇଁ ସ୍ୱାମିନାଥନ କମିଶନ ନିଯୁକ୍ତ ହେଲାମାତ୍ର ତାର ସୁପାରିଶ ଗୁଡ଼ିକୁ ସରକାର ରଖିଦେଲେ ଶୀତଳଭଣ୍ଡାରରେ । ବଡ଼ବଡ଼ ପୁଞ୍ଜିପତିଙ୍କ କର୍ପୋରେଟ ଜଗତ ରାଷ୍ଟ୍ରୀୟ ତହବିଲରୁ ବିଭିନ୍ନ ରିହାତି ଓ ଛାଡ଼ ଆକାରରେ ବୋହି ନେଉଥିବା ଲକ୍ଷ ଲକ୍ଷ କୋଟି ଟଙ୍କାରୁ କିଛି ଅର୍ଥ କୃଷି ଓ କୃଷକ ପାଇଁ ବିନିଯୋଗ ହେଲେ, ବନ୍ୟା ମରୁଡ଼ି, ଋଣଭାର, ଅଭାବୀ ବିକ୍ରି ଅତ୍ୟାବଶକୀୟ ଦ୍ରବ୍ୟ ଗୁଡ଼ିକର ମୂଲ୍ୟ ବୃଦ୍ଧିର କରାଳ ଗ୍ରାସରୁ ଚାଷୀଙ୍କୁ ରକ୍ଷା କରାଯାଇପାରନ୍ତା, ଏଇ ପଣ ଧରିବାକୁ ବାଧକଲା ପରି କୃଷକ ଆନ୍ଦୋଳନ ଗଢିତୋଳି ପାରିଲେ ତାହା ହେବ ସାଥୀ ବିଶ୍ୱନାଥ ସାହୁଙ୍କ ପ୍ରତି ପ୍ରକୃତ ଶ୍ରଦ୍ଧାଞ୍ଜଳୀ ।

# ମୋର ସହଯୋଦ୍ଧା କୃଷକ ନେତା ବିଶ୍ୱନାଥ ସାହୁ

ଲେଖକ: ସୋମନାଥ ପାତ୍ର

ବିଶ୍ୱ ଶାନ୍ତି, ବିଶ୍ୱ ମୁକ୍ତି, ବିଶ୍ୱମୈତ୍ରୀ, ଆନ୍ତର୍ଜାତିକ ମାର୍କ୍ସବାଦୀ ଆଦର୍ଶରେ ବ୍ରତୀ କ୍ରାନ୍ତିକାରୀ ଯାତ୍ରୀ କୃଷକ ଆନ୍ଦୋଳନର ଦକ୍ଷ ସଂଗ୍ରାମୀ ନେତା, ସଂଗ୍ରାମ ଭୂମି ଗଞ୍ଜାମ ଜିଲ୍ଲାର ବରପୁତ୍ର ସାଥୀ ବିଶ୍ୱନାଥ ସାହୁ ଆଜି ଆଉ ବିଶ୍ୱ ଜନତାଙ୍କ ସଙ୍ଗରେ ନାହାନ୍ତି । ତାଙ୍କର ଶେଷ ନିଶ୍ୱାସ ଚାଲି ଯାଇଛି । ସେ ଆଉ ଫେରିବେ ନାହିଁ । ସେ ସିନା ଯାଇଛି, ତା କିର୍ତ୍ତି ରହିଛି । ସଂଗ୍ରାମୀ ଗଞ୍ଜାମ ଜିଲ୍ଲା ରାଜ୍ୟର ବାମପନ୍ଥୀ ଆନ୍ଦୋଳନକୁ । ବିଶେଷ କରି କମ୍ୟୁନିଷ୍ଟ ଆନ୍ଦୋଳନକୁ ପରିଚାଳନା କରିବା ଓ ନେତୃତ୍ୱ ଦେବା ପାଇଁ ଯେଉଁ ସଂଗ୍ରାମୀ ସାଥୀ ମାନଙ୍କୁ ଜନ୍ମ ଦେଇ ଥିଲା ସେମାନଙ୍କ ମଧ୍ୟରୁ ଅନେକ ଏଥି ପୂର୍ବରୁ ଚାଲି ଯାଇଥିଲେ । ଏବେ ସାଥୀ ବିଶ୍ୱନାଥ ସାହୁ ଚାଲିଗଲେ । ଜନ୍ମ ହିଁ ସତ୍ୟ, ମୃତ୍ୟୁ ହିଁ ସତ୍ୟ । ଜନ୍ମ ଥିଲେ ମୃତ୍ୟୁ ରହିଛି । କିଏ ଅଳ୍ପାୟୁ ତ କିଏ ଦୀର୍ଘାୟୁ । ଓଡ଼ିଶାରେ କମ୍ୟୁନିଷ୍ଟ ପାଟିରେ ପ୍ରତିଷ୍ଠାତା ଓ ପ୍ରଥମ ସମ୍ପାଦକ ସାଥୀ ଭଗବତୀ ଚରଣ ପାଣିଗ୍ରାହୀ ଥିଲେ ଅଳ୍ପାୟୁ । ମାତ୍ର ପଞ୍ଚତ୍ରିଂଶ ବର୍ଷ ବୟସରେ ତାଙ୍କର ମୃତ୍ୟୁ ହୋଇଥିଲା । ସାଥୀ ବିଶ୍ୱନାଥଙ୍କର ମୃତ୍ୟୁ ବେଳକୁ ତାଙ୍କର ବୟସ ହୋଇଥିଲା ଏକାନବେ ବର୍ଷ । ଶତାୟୁ ହେବାର ସମସ୍ତଙ୍କର କାମନା ଥିଲା କିନ୍ତୁ ତାହା ସମ୍ଭବ ହେଲା ନାହିଁ । କର୍କଟ ରୋଗରେ ପୀଡ଼ିତ ହୋଇ ସେହି ରୋଗରେ ମୃତ୍ୟୁ ବରଣ କଲେ ।

ରୋଗ ଶଯ୍ୟାରେ ପଡ଼ିଥିବା ବେଳେ ମୁଁ ତାଙ୍କ ଚିକିତ୍ସା କେନ୍ଦ୍ରରେ ଭେଟିଥିଲି । ଆଶା କରୁଥିଲି ସେ ଶୀଘ୍ର ସୁସ୍ଥ ହୋଇ ଫେରିବେ । କିନ୍ତୁ ତାହା ହେଲା ନାହିଁ । ସେ ଆମ ସମସ୍ତଙ୍କୁ ଛାଡ଼ି ଚାଲିଗଲେ । ତାଙ୍କ ମୋ ମଧ୍ୟରେ ସଂପର୍କ ଖୁବ୍ ସୁଦୃଢ଼ ଥିଲା । ଉଭୟଙ୍କ ମଧ୍ୟରେ ବନ୍ଧୁତା ଓ ମିତ୍ରତା ସୃଷ୍ଟି ହୋଇଥିଲା ସଂଗ୍ରାମର ମାଧ୍ୟମ ମାର୍କ୍ସବାଦ ଆଦର୍ଶ ଭିତ୍ତିରେ ଓ କୃଷକ ଆନ୍ଦୋଳନ ଜରିଆରେ । ତାଙ୍କର ବିୟୋଗ ମୋ ମନରେ ଯେପରି ଦାରୁଣ ଆଘାତ ଆଣିଛି ସେହିପରି ଏକ ଦୁର୍ବଳତା ସୃଷ୍ଟି କରିଛି । ଭାବୁଛି ମୋ ଦିନକାଳ ପାଖେଇ ଆସିଲା । ଜଣକ ପରେ ଜଣେ ସାଥୀ ତ ବିଦାୟ ନେଇ ଚାଲି ଯାଉଛନ୍ତି ମୁଁ ରହିବି କାହିଁକି ? ତେଣୁ ବେଗି ବେଗି କାମନା ଥିବା କାମ ଛିଣ୍ଡାଇବାକୁ ମନରେ ବ୍ୟାକୁଳତା ଆସିଛି । "କିଏ ଜାଣେ କାହାର ଆଜି ମୃତ୍ୟୁ କାଳ ହୋଇଯିବ ଉପସ୍ଥିତ ।

ସାଥୀ ବିଶ୍ୱନାଥ ଥିଲେ ଗଞ୍ଜାମ ଜିଲ୍ଲାର ଜଣେ ଜନପ୍ରିୟ ଜନନେତା, ଛାତ୍ର ଜୀବନରୁ ସେ ବାମପନ୍ଥୀ ଛାତ୍ର ଆନ୍ଦୋଳନ ସହିତ ଜଡ଼ିତ ରହି ପରବର୍ତ୍ତୀ ସାଧାରଣ କର୍ମ କ୍ଷେତ୍ରକୁ ଓହ୍ଲାଇ ଆସିଥିଲେ । ଜିଲ୍ଲା ସ୍ତରରୁ ସେ ରାଜ୍ୟ ସ୍ତରର ନେତୃତ୍ୱ କ୍ଷେତ୍ରକୁ ଆସି ପାରିଥିଲେ । ସେ ଦୀର୍ଘ ଦିନ ଧରି ଗଞ୍ଜାମ ଜିଲ୍ଲା କମ୍ୟୁନିଷ୍ଟ ପାଟିରେ ସମ୍ପାଦକ ଥିଲେ । ସେହି ସମୟରେ ସେ ଗଞ୍ଜାମ ଜିଲ୍ଲା ବିଭିନ୍ନ ଅଞ୍ଚଳ ଗସ୍ତକରି ବିଭିନ୍ନ ଲୋକଙ୍କ ସହିତ ପରିଚିତଥିଲେ ଓ ସେମାନଙ୍କ ସହିତ ଯୋଗାଯୋଗ ପ୍ରତିଷ୍ଠା କରିଥିଲେ । ଗଞ୍ଜାମ ଜିଲ୍ଲାର କୃଷକ

ଆନ୍ଦୋଳନ, ସେ ଥିଲେ ଅନ୍ୟତମ ନେତା ତାଙ୍କର କର୍ମ ଦକ୍ଷତା ଯୋଗୁ ସେ ରାଜ୍ୟ କମ୍ୟୁନିଷ୍ଟ ପାର୍ଟି ଓ ରାଜ୍ୟ କୃଷକ ସଭାର ନେତୃତ୍ୱକୁ ଆସପାରିଥିଲେ । ସେ ବହୁଦିନ ଧରି ରାଜ୍ୟ କୃଷକ ସଭାର ସମ୍ପାଦକ/ସଭାପତି ଓ ଜାତୀୟ ପରିଷଦର ସଭ୍ୟଥିଲେ ।

ତାଙ୍କ ସହତ ମୋର ପ୍ରଥମ ସାକ୍ଷାତ ଓ ଏକତ୍ର କାମ କରିବାର ସୁଯୋଗ ମିଳିଥିଲା, ଏକ ନିର୍ବାଚନ ସଂଗ୍ରାମ ସମୟରେ ବିନାୟକ ଆଚାର୍ଯ୍ୟ ଯେତେବେଳେ କମ୍ୟୁନିଷ୍ଟ ପାର୍ଟି ନିକଟରେ ବିଧାନ ସଭାକୁ ପ୍ରାର୍ଥୀ ହୋଇଥିଲେ ମୁଁ ସେହି ସମୟରେ ପାର୍ଟି ତରଫରୁ ତାଙ୍କର ପ୍ରଚାର ପାଇଁ ଗଞ୍ଜାମ ଜିଲ୍ଲାକୁ ଯାଇଥିଲି । ସେହିଠାରେ ତାଙ୍କ ସହିତ ସାକ୍ଷାତ ହୋଇଥିଲା । ସେହିଦିନଠାରୁ ତାଙ୍କ ମୋ, ମଧରେ ସଂପର୍କ ଅତୁଟ ରହିଥିଲା ସେ ଗଞ୍ଜାମ ଜିଲ୍ଲା କମ୍ୟୁନିଷ୍ଟ ପାର୍ଟିର ସମ୍ପାଦକ ଓ ମୁଁ ପୁରୀ ଜିଲ୍ଲା କମ୍ୟୁନିଷ୍ଟ ପାର୍ଟିର ସମ୍ପାଦକ ଭାବେ ରହିଥିବା ସମୟରେ ଉଭୟଙ୍କ ମଧରେ ଆଦର୍ଶଗତ ଭାବର ବିନିମୟ ଆମର ବନ୍ଧୁତାକୁ ସୁଦୃଢ଼ କରାଇଥିଲା । ବ୍ୟକ୍ତିଗତ ଭାବେ ସାଥୀ ସୁଲଭଭାବେ ଏପରି ବୃଦ୍ଧି ପାଇଥିଲା ଯେ ଉଭୟଙ୍କ ମଧରେ କିଛିଦିନ ସାକ୍ଷାତର ଅଭାବ ହେଲେ ଉଭୟ ଉଭୟଙ୍କୁ ଭେଟିବା ପାଇଁ ମନରେ ବ୍ୟାକୁଳତା ପ୍ରକାଶ ପାଉଥିଲା, ଫୋନ ଜରିଆରେ ଭାବ ବିନିମୟ ଘଟାଇ ସନ୍ତୋଷ ଲାଭ କରୁଥିଲୁ ।

ନିଜର କର୍ମ ଦକ୍ଷତା ଓ ଜନ ପ୍ରିୟତା ଯୋଗୁ ସେ ଗଞ୍ଜାମ ଜିଲ୍ଲାର ଛତ୍ରପୁର ନିର୍ବାଚନ ମଣ୍ଡଳୀରୁ ଦୁଇଥର ଓଡ଼ିଶା ବିଧାନ ସଭାକୁ କମ୍ୟୁନିଷ୍ଟ ପାଟିର ବିଧାୟକଭାବେ ନିର୍ବାଚିତ ହୋଇ ଆସିଥିଲେ । ଜଣେ ଦକ୍ଷ ବିଧାୟକ ଭାବେ ତାଙ୍କର ସୁନାମ ଥିଲା । ବିରୋଧୀ ରାଜନୈତିକ ବିଧାୟକ ଓ ନେତାମାନେ ମଧ ତାଙ୍କୁ ସମ୍ମାନ ଦେଉଥିଲେ ।

ଚମ୍ପାଖଣ୍ଡି ଅଞ୍ଚଳରେ ତାଙ୍କ ଉଦ୍ୟମରେ ଏକ ହାଇସ୍କୁଲ ପ୍ରତିଷ୍ଠା ହୋଇଛି । କିନ୍ତୁ ଜନ ମଙ୍ଗଳ କାର୍ଯ୍ୟ ଗଞ୍ଜାମ ଜିଲ୍ଲାରେ ତାଙ୍କ ଉଦ୍ୟମରେ ହୋଇଛି । ତାଙ୍କ ମୃତ୍ୟୁ ମୋ ମନରେ ଯେପରି ଦୁଃଖ ଦେଇଛି ଅନ୍ୟ ମାନଙ୍କ ମନରେ ମଧ ସେହିପରି ଦୁଃଖ ଦେଇଛି, ଗୋପବନ୍ଧୁଙ୍କ ଭାଷାରେ - ମନୁଷ୍ୟ ଜୀବନ ନୁହଁଇ କେବଳ ବର୍ଷ, ମାସ ଦିନ ଦଣ୍ଡ । କର୍ମେ ଯିଏ ନର କର୍ମ ଏକା ତାର ଜୀବନର ମାନଦଣ୍ଡ ॥

ଏହି ମାନଦଣ୍ଡରେ ସାଥୀ ବିଶ୍ୱନାଥ ଚିର ସ୍ମରଣୀୟ, ଚିର ନମସ୍ୟ, ମୃତ୍ୟୁ ବେଳକୁ ସେ ରାଜ୍ୟ ପାର୍ଟିର କଣ୍ଟ୍ରୋଲ କମିଶନ ଚେୟାରମ୍ୟାନଥିଲେ । ସାଥୀ ବଶ୍ୱନାଥ ଅମର ରହେ ।

ମୋ: ୯୯୩୮୪୫୯୦୦୨

# ଦଳମତ ନିର୍ବିଶେଷରେ ସଂଗ୍ରାମୀମାନଙ୍କୁ ଶ୍ରଦ୍ଧା କରୁଥିଲେ କମ୍ୟୁନିଷ୍ଟ ନେତା ବିଶ୍ୱନାଥ ବାବୁ

ପ୍ରଫୁଲ୍ଲ ସାମନ୍ତରା

୧୯୭୭ ସାଲରେ ଜରୁରୀ ପରିସ୍ଥିତିର ଶେଷଭାଗ ବେଳକୁ ସାଧାରଣ ନିର୍ବାଚନରେ ଛତ୍ରପୁର ବିଧାନସଭାର ସି.ପି.ଆଇ ପ୍ରାର୍ଥୀ ରୂପେ ବିଶ୍ୱାନାଥ ସାହୁଙ୍କ ବିରୋଧରେ ଜନତାପାର୍ଟିର ପ୍ରାର୍ଥୀ ଦୁର୍ଯ୍ୟୋଧନ ସାହୁଙ୍କ ସପକ୍ଷରେ ଭୋଟ ପ୍ରଚାର କଲାବେଳେ ବିଶ୍ୱାନାଥ ସାହୁଙ୍କ ପରିଚୟ ଥିଲା ସେ ଜଣେ ବିଶିଷ୍ଟ କମ୍ୟୁନିଷ୍ଟ ନେତା । ବ୍ୟକ୍ତିଗତ ଭାବରେ ତାଙ୍କରି ସହ ଦେଖା ହୋଇନଥାଏ କି ପରିଚୟ ନଥାଏ । ମୁଁ ଜରୁରୀ ପରିସ୍ଥିତିରେ ଜେଲରୁ ମୁକ୍ତ ହୋଇ ଜନତା ପାର୍ଟି ପାଇଁ ପ୍ରଚାର କରୁଥାଏ ସେତେବେଳର କଂଗ୍ରେସ ଶାସନର ଏକଛତ୍ରବାଦ ବିରୋଧରେ । ସେତେବେଳେ କଂଗ୍ରେସ ସହ ସିପିଆଇର ବୁଝାମଣା ଥାଏ ନିର୍ବାଚନରେ । ବିଶ୍ୱନାଥ ବାବୁ ବିଜୟୀ ହେଲେ ।

ବିଧାନସଭାରେ ବିରୋଧୀ ଦଳର ସଭ୍ୟ ରୂପେ ସାମ୍ୟବାଦ ବିଚାର ସହ ପ୍ରଗତିଶୀଳ ବିଧିବିଧାନ ପାଇଁ ସ୍ୱର ଉତ୍ତୋଳନ କରିବା ଥିଲା ତାଙ୍କର ଅତି ଗୁରୁତ୍ୱପୂର୍ଣ୍ଣ ଭୂମିକା । ୧୯୮୦ରେ ଜନତା ପାର୍ଟି ସରକାର ଭାଙ୍ଗିଗଲା, ପୁଣି କଂଗ୍ରେସ ଶାସନ ଆସିଲା କେନ୍ଦ୍ର ଓ ରାଜ୍ୟରେ । ଭାରତୀୟ କମ୍ୟୁନିଷ୍ଟ ପାର୍ଟି କଂଗ୍ରେସ ବିରୋଧରେ ଅନ୍ୟ ବାମପନ୍ଥୀ ଓ ଗଣତାନ୍ତ୍ରିକ ଦଳମାନଙ୍କ ସହ ମିଳିତ କାର୍ଯ୍ୟକ୍ରମରେ ସକ୍ରିୟ ଭାଗିଦାର ରହିଲା । ଗଞ୍ଜାମ ଜିଲାରେ ରାଜ୍ୟର କଂଗ୍ରେସ ଶାସନ ବିରୋଧରେ ସିପିଆଇ,ସିପିଆଇଏମ, ଜନତା ଦଳର ମିଳିତ କାର୍ଯ୍ୟକ୍ରମ ବାରମ୍ବାର ବ୍ୟାପକ ଭାବରେ ହେଉଥିଲା । କଂଗ୍ରେସ ଛାଡି ଆସିଥିବା ପୂର୍ବତନ ମୁଖ୍ୟମନ୍ତ୍ରୀ ତଥା ବାମପନ୍ଥୀ ବିଚାରକୁ ନିଜ ଭିତରେ ଜୀବନ୍ତ ରଖୁଥିବା ରାଜନେତା ବିନାୟକ ଆଚାର୍ଯ୍ୟ ଏହି ମିଳିତ କାର୍ଯ୍ୟକ୍ରମର ଆଗଧାଡିର ନେତା ରୂପେ ଆମମାନଙ୍କର ସାରଥୀ ରୂପେ ରହିଥାନ୍ତି । ଏସବୁ ମିଳିତ ଗଣତାନ୍ତ୍ରିକ ଆନ୍ଦୋଳନକୁ ଅଧିକ ଭାବରେ ଗଞ୍ଜାମ ଜିଲାର ବିଭିନ୍ନ ଅଞ୍ଚଳକୁ ନେବାରେ ବିଶ୍ୱନାଥ ବାବୁଙ୍କ ଅବଦାନ ଅଧିକ ଥିଲା । ସେ ଗଞ୍ଜାମ ଜିଲାରେ ଗାଁ ଗାଁରେ ପରିଚିତ ଯେହେତୁ କୃଷକ ଆନ୍ଦୋଳନକୁ ସଂଗଠିତ କରୁଥିଲେ । ସେତେବେଳେ ଜନତା ଦଳର ପଦାଧିକାରୀ ରୂପେ ମିଳିତ କାର୍ଯ୍ୟକ୍ରମଗୁଡିକୁ ସହଯୋଗ କରିବା ମୋର ଦାୟିତ୍ୱ ଥାଏ । ୧୯୯୪ ବେଳକୁ ଜନତା ଦଳରୁ ଇସ୍ତଫା ଦେଇଆସିବା ପରେ ରାଜ୍ୟରେ ଏକ ବିକଳ୍ପ ରାଜନୈତିକ ଶକ୍ତି ନିର୍ମାଣ ପାଇଁ ଜଗତିକରଣ, ଘରୋଇକରଣ ତଥା ଉଦାରୀକରଣ ଆର୍ଥିକ ନୀତି ବିରୋଧରେ ଅଭିଯାନ କଲାବେଳେ ସ୍ୱାଭାବିକ ଭାବେ ବାମପନ୍ଥୀ ଦଳର ନେତାମାନଙ୍କ ସହ ମୋର ଅଧିକ ସମ୍ପର୍କ ସ୍ଥାପନ ହୋଇଛି । କିନ୍ତୁ ବିଶ୍ୱନାଥ ବାବୁଙ୍କ ସହ ଅତି ନିକଟରେ ସମ୍ପର୍କ ସ୍ଥାପନ ହୋଇଗଲା । କାରଣ ମୁଁ ଜାଣିନି । କିନ୍ତୁ ବୟସରେ ମୁଁ ଖୁବ ଛୋଟ ହୋଇଥିବାରୁ ତାଙ୍କରି ଶ୍ରଦ୍ଧା, ସହଯୋଗ ଓ ସମର୍ଥନ ମୋ ପାଇଁ ପ୍ରେରଣା ଥିଲା । ମୁଁ ଦଳୀୟ ରାଜନୀତିରୁ ମୁକ୍ତ ହୋଇ ସମାଜବାଦ ବିଚାର ଆଧାରରେ ପୁଞ୍ଜିବାଦୀ ଆର୍ଥିକ ସଂସ୍କାର ବିରୋଧୀ ଅଭିଯାନରେ

ସକ୍ରିୟ ହେବାବେଳେ ଗୋପାଳପୁର ଟାଟା ଇସ୍ପାତ ପ୍ରକଳ୍ପ ବିରୋଧରେ ଗଣସଂଗ୍ରାମ ଆରମ୍ଭ ହୋଇଥାଏ ଛତ୍ରପୁର ଚମାଖଣ୍ଡି ଅଞ୍ଚଳରେ । ପରିବେଶକୁ ଧ୍ୱଂସକରିବା ସହ ଋଷିକୁଲ୍ୟା ନଦୀଜଳକୁ ଶୋଷି ନେବାପାଇଁ ଆସିଥିବା ଟାଟା ପ୍ରକଳ୍ପ ବିରୋଧରେ ଗୋପାଳପୁର ଉପକୂଳ ସୁରକ୍ଷା ପରିଷଦ ଗଠନ କରି ଅଭିଯାନ ଆରମ୍ଭ କଲି ଋଷିକୁଲ୍ୟା ସୁରକ୍ଷା ସହ ଗୋପାଳପୁର ଉପକୂଳର ପ୍ରାକୃତିକ ସମ୍ପଦର ସୁରକ୍ଷା ପାଇଁ । ଗଣସଂଗ୍ରାମ ସମିତିର ବିସ୍ଥାପନ ବିରୋଧୀ ଆନ୍ଦୋଳନର ସହଯୋଗୀ ରୂପେ ଏହି ଫୋରମ କାର୍ଯ୍ୟକଲା । କିନ୍ତୁ ଏହି ଫୋରମକୁ ଅଧିକ କ୍ରିୟାଶୀଳ କରିବାରେ କୃଷକ ଆନ୍ଦୋଳନର ନେତା ବିଶ୍ୱନାଥ ବାବୁଙ୍କ ଆନ୍ତରିକ ସହଯୋଗ ମୋ ପାଇଁ ଅବିସ୍ମରଣୀୟ । ଗଣସଂଗ୍ରାମ ସମିତିର ବିଭିନ୍ନ ଆନ୍ଦୋଳନାତ୍ମକ କାର୍ଯ୍ୟକ୍ରମରେ ବିଶ୍ୱାନାଥ ବାବୁ ଯୋଗ ଦେବା ପୂର୍ବରୁ ମତେ ଫୋନ କରିଥାନ୍ତି ମୁଁ କେତେ ବେଳେ ପହଞ୍ଚୁଛି । ଆନ୍ଦୋଳନ ବେଳେ ଜାଣିଲି ଚମାଖଣ୍ଡି ଅଞ୍ଚଳରେ ଭାଗଚାଷୀ ଅଧିକାର ଆନ୍ଦୋଳନର ଇତିହାସ । ଚାଷୀମାନେ ବ୍ରହ୍ମପୁରର ଜମିମାଲିକ ମାନଙ୍କ ଜମି ଚାଷକରି ସମ୍ପୂର୍ଣ୍ଣ ଅଧିକାର ପ୍ରାପ୍ତ କରିଥାନ୍ତି । ଜମି ଆନ୍ଦୋଳନ ନେତୃତ୍ୱ ନେଇଥିଲା କମ୍ୟୁନିଷ୍ଟ ପାର୍ଟି, ବିଶ୍ୱନାଥ ବାବୁ ଥିଲେ ଚାଷୀ ଆନ୍ଦୋଳନର ସଂଗଠକ । କିନ୍ତୁ ଟାଟା ପ୍ରକଳ୍ପ ପାଇଁ ଜବରଦସ୍ତ ଜମି ଅଧିଗ୍ରହଣ କଲାପରେ ଚାଷୀମାନେ ସର୍ବହରା ହୋଇଗଲେ ଓ ଜମି ମାଲିକମାନେ ଫାଇଦା ନେଲେ । ଚମାଖଣ୍ଡିରେ ହାଇସ୍କୁଲ ଟିଏ ପୂର୍ଣ୍ଣାଙ୍ଗ ଅବସ୍ଥାରେ ଠିଆ ହୋଇଥାଏ ୧୯୯୫ ବେଳକୁ । ତାର ପ୍ରତିଷ୍ଠାତା ହେଉଛନ୍ତି ବିଶ୍ୱନାଥ ବାବୁ । ସେହି ସ୍କୁଲର ନିର୍ମାଣ ଆରମ୍ଭରୁ ଶେଷଯାଏ ଏବଂ ସ୍କୁଲର ବିକାଶ ପାଇଁ ଶେଷ ନିଶ୍ୱାସ ଯାଏ ବିଶ୍ୱନାଥ ବାବୁଙ୍କ ମନଯୋଗ ଥାଏ "ସେହି ଶିକ୍ଷାନୁଷ୍ଠାନ ପାଇଁ । ଗଞ୍ଜାମ ଜିଲାରେ ଶିକ୍ଷାର ପ୍ରସାର ପାଇଁ ଶିକ୍ଷାନୁଷ୍ଠାନ ଗଢିତୋଳିବାକୁ ଉଦ୍ୟମ କରିବା ଥିଲା ବିଶ୍ୱନାଥ ବାବୁଙ୍କ ଏକ ଝୁଙ୍କ । ହିଞ୍ଜିଳି ଅଞ୍ଚଳର ଆଲପୁର ଗାଁର ପ୍ରତିଟି ବୟସ୍କ ଲୋକ କହିବେ ସେଠାରେ ସ୍କୁଲ ଆରମ୍ଭ କରିବାକୁ ବିଶ୍ୱାନାଥ ବାବୁ ଆଲପୁରକୁ କିପରି ନିଜ ଗାଁ କରିଦେଇଥିଲେ ।

ବିଶ୍ୱନାଥ ବାବୁଙ୍କ ଠାରୁ ମୁଁ ଶୁଣେ ତାଙ୍କର ଚାଷୀ ଗୁଳିକାଣ୍ଡର ଇତିହାସ । କମ୍ୟୁନିଷ୍ଟ ନେତା ଗୋବିନ୍ଦ ପ୍ରଧାନଙ୍କ ନେତୃତ୍ୱରେ ଚାଷୀ ଆନ୍ଦୋଳନକୁ ଚପାଇ ଦେବାକୁ ଗୁଳିକାଣ୍ଡ ହୋଇଥିଲା । ସେତିକିବେଳେ ବିଶ୍ୱନାଥ ବାବୁ ଯୁବ ଚାଷୀ ନେତା ଭାବରେ ଜେଲରେ ରହିବାକୁ ପଡିଲା । ମୋ ସହ ଯେବେବି ଆଲୋଚନା କରନ୍ତି ତାଙ୍କରି କଥାରେ ପ୍ରାଥମିକତା ଥାଏ ବିନା ଚାଷୀ ଆନ୍ଦୋଳନରେ ଗାଁ ଲୋକଙ୍କୁ ନ୍ୟାୟ ମିଳିବନାହିଁ । ବିସ୍ଥାପନ ବିରୋଧୀ ତଥା ପ୍ରାକୃତିକ ସମ୍ପଦର ସୁରକ୍ଷା ସହ ଚାଷୀ ଓ ଆଦିବାସୀଙ୍କ ଅଧିକାର ଆନ୍ଦୋଳନକୁ ସେ ସର୍ବଦା ସମର୍ଥନ ଦେବାସହ ନିଜେ ସାମିଲ ହେବାକୁ ମନ କରୁଥିଲେ । ବାର୍ଦ୍ଧକ୍ୟତା ତାଙ୍କୁ ରୋକିପାରୁନଥିଲା । ଲେଖିଲେ ତ ଅନେକ ହେବ । ତାଙ୍କର ମହନୀୟତା ମତେ ପ୍ରଭାବିତ କରିଥିଲା । ୨୦୦୦ରେ ସେ ଥିଲେ ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ଛତ୍ରପୁର ବିଧାନସଭା ପ୍ରାର୍ଥୀ । ସାଧୀନ ଭାବେ ଗଣସଂଗ୍ରାମ ସମିତିର ନେତା ନାରାୟଣ ରେଡି ମଧ ପ୍ରାର୍ଥୀ ହୋଇଥାନ୍ତି । ବିଶ୍ୱନାଥ ବାବୁ ମତେ ଚିଠି

ଲେଖିଥାନ୍ତି ମୁଁ ତାଙ୍କ ପାଇଁ ପ୍ରଚାର କରିବାକୁ । କିନ୍ତୁ ସେତେବେଳେ ଗଣସଂଗ୍ରାମ ସମିତିର ଆନ୍ଦୋଳନ ଯୋଗୁଁ ନାରାୟଣ ରେଡିଙ୍କ ପ୍ରାର୍ଥୀତ୍ୱ ବିଜେପି ପ୍ରାର୍ଥୀଙ୍କ ବିରୋଧରେ ବଳିଷ୍ଠ ଥିଲା । ବିଜେପି ପ୍ରାର୍ଥୀ ମଧ ଟାଟା ପ୍ରକଳ୍ପ ସପକ୍ଷରେ ଥିଲେ । ମୋର ବିବେକ କହିଲା ବିଜେପି ପ୍ରାର୍ଥୀଙ୍କୁ ହରାଇବା ପାଇଁ ମତେ କାର୍ଯ୍ୟ କରିବାକୁ ହେବ । ମୁଁ ବିଶ୍ୱନାଥ ବାବୁଙ୍କ ପାଖକୁ ନିର୍ବାଚନ ପୂର୍ବରୁ ଖଣ୍ଡିଏ ଚିଠି ଲେଖି ଜଣାଇଲି " ମୁଁ ଆନ୍ଦୋଳନର ସ୍ୱାର୍ଥ ଦୃଷ୍ଟିରୁ ଓ ସାମ୍ପ୍ରଦାୟିକ ଦଳର ପରାଜୟ ଦୃଷ୍ଟିରୁ ସ୍ୱାଧୀନ ପ୍ରାର୍ଥୀ ନାରାୟଣ ରେଡିଙ୍କ ସପକ୍ଷରେ ପ୍ରଚାର କରୁଛି । ଆପଣ ଜଣେ ସଚ୍ଚୋଟ ସାମ୍ୟବାଦୀ ନେତା ରୂପେ ମୋର ଭୂମିକାକୁ ଭୁଲ ବୁଝିବେ ନାହିଁ । ଆପଣଙ୍କୁ ସମ୍ମାନ ଦେଇ ମୁଁ ଏହି କାର୍ଯ୍ୟକରୁଛି ।" ନିର୍ବାଚନ ସରିଲା ବିଜେପି ଜିତିଗଲା । କିନ୍ତୁ ତାପରେ ବିଶ୍ୱନାଥ ବାବୁ ପ୍ରଥମ ଦେଖାରେ ହସିଦେଇ କହିଲେ ଚିଠି ମିଳିଥିଲା । ତା ପର ସମୟରେ ମୁଁ ଦେଖିଆସିଛି, ଅନୁଭବ କରୁଛି ବିଶ୍ୱନାଥ ବାବୁ ଅଧିକଥର ମତେ ଫୋନ କରିବେ, ଆଲୋଚନା କରିବେ ଓ ମୋ ଦ୍ୱାରା ସମ୍ପାଦିତ ପତ୍ରିକା ମଣିଷର ବାର୍ତ୍ତାବହ ସ୍ୱାଭିମାନକୁ ନିୟମିତ ଭାବେ ପଢ଼ିବେ । ଯେଉଁଥର ସ୍ୱାଭିମାନ ପହଞ୍ଚିବା ଡେରିହେବ, ଫୋନକରି ପଚାରିବେ କାହିଁକି ଆସିନି ? ତଳ ସ୍ତରରୁ ସଂଗଠନ କରିଆସିଥିବା କୃଷକ ନେତା ରୂପେ ମୂଲ୍ୟବୋଧକୁ ଅତି ଗୁରୁତ୍ୱ ଦେଉଥିଲେ । ପତ୍ରିକାର ବାର୍ଷିକ ଦେୟ ସେ ଡାକରେ ପଠାଇଦେବେ । ଏବେ ସେ ଅସୁସ୍ଥ ହେବାର ଏକମାସ ପୂର୍ବରୁ ମତେ ଫୋନକଲେ ପତ୍ରିକା ପାଇଁ ଦୁଇଶତ ଟଙ୍କା କାହାକୁ ପଠାଇ ଭଗବତୀ ଭବନରୁ ନେଇଯାଅ । ମୁଁ ତାଙ୍କୁ ଉତ୍ତର ଦେଲି : ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ, ମୁଁ ଆପଣଙ୍କୁ ଦେଖାକରିବି ଗାଁରେ । ସେଠାରୁ ନେଇଆସିବି । ତା ପରେ ସେ ହସପିଟାଲରେ । ଥରେ ସୁଧୀର ପଟ୍ଟନାୟକଙ୍କ ସହ ଯାଇ ହସପିଟାଲରେ ଦେଖାକରି ଆସିଲି । ମୁଁ ପୁଣି ଗାଁକୁ ଯାଇ ଦେଖିବାକୁ ଯୋଜନା କରିଥିଲି । କିନ୍ତୁ ତାହା ହୋଇପାରିଲା ନାହିଁ । ସେ ମୋର ୨୦୦ଟଙ୍କା ବାକି ରଖି ଚାଲିଗଲେ ସବୁଦିନ ପାଇଁ । ମୁଁ ଦିଲ୍ଲୀରେ ଏକ କାର୍ଯ୍ୟକ୍ରମ ସାରି ଭୁବନେଶ୍ୱର ପହଞ୍ଚିଲା ପରେ ବିଶ୍ୱନାଥ ବାବୁଙ୍କ ନିଧନ ଖବର ଶୁଣିଲା ବେଳକୁ ତାଙ୍କର ଅନ୍ତେଷ୍ଟିକ୍ରିୟା ଶେଷ ହୋଇଯାଇଥିଲା । ମୋର ଅବଶୋଷ ରହିଗଲା । ତାଙ୍କୁ ଶେଷ ଦର୍ଶନ କରିପାରିଲି ନାହିଁ । ମୁଁ ମଧ ତାଙ୍କ ପାଖରେ ଋଣୀ ହୋଇରହିଗଲି, ଯାହାଙ୍କୁ ମୁଁ ପ୍ରତିଶ୍ରୁତି ଦେଇଥିଲି ଗାଁକୁ ଯାଇ ଦେଖା କରିବାକୁ, ତାଙ୍କରି ମରଶରୀର ପାଖରେ ବି ଠିଆହୋଇ ଫୁଲ ଦିଟା ଦେଇପାରିଲି ନାହିଁ । ସେ ମହାନ ଥିଲେ ମଣିଷ ଭାବରେ, ଜଣେ ସାମ୍ୟବାଦୀ କୃଷକନେତା ଭାବରେ ସମାଜକୁ ଓ ସମାଜର ପରିବର୍ତ୍ତନକାମୀ ସଂଗ୍ରାମୀ ମାନଙ୍କୁ ଭଲ ପାଉଥିଲେ ଶ୍ରଦ୍ଧା କରୁଥିଲେ । ସେହି ମହାନତା ପାଇଁ ଗଭୀର ଶ୍ରଦ୍ଧାଞ୍ଜଳି ଜଣାଉଛି ।

ସଭାପତି, ଲୋକଶକ୍ତି ଅଭିଯାନ

# କମ୍ରେଡ୍ ବିଶ୍ୱନାଥ ସାହୁଙ୍କ ଅମ୍ଳାନ ସ୍ମୃତିରେ

କିଶୋର ଜେନା

୧ ୯ ତାରିଖ, ରାଜଧାନୀ ଭୁବନେଶ୍ୱରର ବିଶାଳ ବାମପନ୍ଥୀ ଜନ ସମାବେଶରେ ଯୋଗଦେବା ପାଇଁ ଭଗବତୀ ଭବନରେ ପହଞ୍ଚି ଦେଖିଲି ଗେଟ ପାଖରେ ଏକ ଆମ୍ବୁଲାନସ । ମନରେ ଶଙ୍କା ନେଇ ଭଗବତୀ ଭବନର ଅଗଣାରେ ପହଞ୍ଚି ଯାହା ଦେଖିଲି ବିଶ୍ୱାସ କରି ପରିଲିନି । କମ୍ରେଡ୍ ବିଶ୍ୱନାଥ ସାହୁଙ୍କ ମରଶରୀର, ପାର୍ଶ୍ୱରେ ଦଣ୍ଡାୟମାନ ପାର୍ଟି ନେତୃବୃନ୍ଦ ଓ ବହୁକର୍ମୀ ।

୧ ୯ ୬ ୮ ର ଜୁନ ମାସରେ ପ୍ରଥମେ ଦେଖିଲି ତାଙ୍କୁ ଭୁବନେଶ୍ୱରରେ ବିଧାନ ସଭା ସମ୍ମୁଖରେ କମ୍ୟୁନିଷ୍ଟ ପାର୍ଟିର ବିଶାଳ ଗଣ ସମାବେଶରେ । ସେ ସ୍ଲୋଗାନ ଦେଉଥିଲେ ଏକ ଖୋଲା ଜିପରେ ଛିଡ଼ା ହୋଇ ତାଙ୍କ ନାଁ ଜାଣିନଥିଲି, ସେଠାରେ ହିଁ ଜାଣିଲି ସେ ହେଉଛନ୍ତି ବିଶ୍ୱନାଥ ସାହୁ । ଗଂଜାମ ଜିଲ୍ଲା ପାର୍ଟି ସମ୍ପାଦକ । ୧ ୯ ୭ ୨ ରେ ବିଧାନ ସଭାକୁ ନିର୍ବାଚିତ ହେଲେ । ଛତ୍ରପୁରରୁ ୧ ୯ ୭ ୮ ରେ ନିଖିଳ ଓଡ଼ିଶା ବ୍ୟାଙ୍କ କର୍ମଚାରୀ ସଂଘର ଦ୍ୱିତୀୟ ସମ୍ମିଳନୀ ବ୍ରହ୍ମପୁରରେ ଅନୁଷ୍ଠିତ ହୋଇଥିଲା । ତା ପୂର୍ବରୁ ମୁଁ ତାଙ୍କୁ ସାକ୍ଷାତ କରିଥିଲି ଭୁବନେଶ୍ୱରରେ ଏମ.ଏଲ.ଏ କ୍ୱାର୍ଟରରେ, ପ୍ରସ୍ତୁତିରେ ସାହାଯ୍ୟ ବିଶେଷ କରି ବ୍ରହ୍ମପୁରର ସରକାରୀ ସର୍କିଟ ହାଉସର ସଂରକ୍ଷଣ ସଂପର୍କରେ । ମୋର ପରିଚୟ ଦେବାରୁ, ସେ ଏତେ ଖୁସି ହୋଇଯାଇଥିଲେ, ସେହି ଦିନ ତାହା ମୁଁ ଭୂଲି ପାରିବି ନାହିଁ । ଆମ ଗାଁର ପ୍ରଥମ କମ୍ୟୁନିଷ୍ଟ, ଅବିଭକ୍ତ କଟକ ଜିଲ୍ଲାର ଏକଦା ସମ୍ପାଦକ ଗଗନ ବିହାରୀ ଜେନାଙ୍କଠାରୁ ଆରମ୍ଭ କରି ଦୁଃଶାସନ ଜେନା, ପ୍ରହ୍ଲାଦ ଜେନା ଏବଂ ଦୁଖୀକେଶ ସାମଲ ଏବଂ କମ୍ୟୁନିଷ୍ଟ ପାର୍ଟିର ସଭ୍ୟପଦ ଗ୍ରହଣ କରିନଥିଲେ ମଧ କମ୍ୟୁନିଷ୍ଟ ବୋଲି ପ୍ରାୟ ସର୍ବତ୍ର ପରିଚିତ ନବଘନ ଜେନାଙ୍କ ସଂପର୍କରେ ଟିକିନିଖି ଖବର ନେଲେ । ଗଗନ ବିହାରୀ ଜେନାଙ୍କ ବିବାହ ସମୟରେ ତାଙ୍କର ଏକ ପ୍ରକାରର ମଧସ୍ଥତା ଏବଂ ନବଘନ ଜେନାଙ୍କ ସହ ପାରିବାରିକ ସଂପର୍କ ସମ୍ବଧରେ ସୂଚନା ଦେଇ ଅତ୍ୟନ୍ତ ଆନନ୍ଦିତ ହୋଇଗଲେ । ସେହିଦିନଠାରୁ ତାଙ୍କ ସହ ମୋର ସଂପର୍କ ଅତ୍ୟନ୍ତ ନିବିଡ଼ ହୋଇଥିଲା ।

ବିଶ୍ୱନାଥବାବୁ ଜଣେ ନେତା ନଥିଲେ ଭଲ କର୍ମୀ ଥିଲେ । ଗଂଜାମ ତଥା ଓଡ଼ିଶାର ସାଧାରଣ କର୍ମୀଙ୍କ ସହ ମିଶି ପାରୁଥିଲେ । ବହୁ ତରୁଣ କର୍ମୀଙ୍କୁ ଜିଲ୍ଲା ସମ୍ପାଦକ ଥିବା ବେଳେ ପାର୍ଟିକୁ ଆଣିଥିଲେ । କମ୍ରେଡ ପ୍ରଶାନ୍ତ ପାଟଯୋଶୀ (ନିଲୁ ଭାଇନା)ରମେଶ ପାଢ଼ୀ ପ୍ରକାଶ ପାତ୍ର ସଗତଃ ସାଥୀ ଦେବେନ୍ଦ୍ର ପଣ୍ଡା, ସାଥୀ ଜନ୍ନା ସୁଭାଷଙ୍କ ସମେତ ପର୍ଟି ବାହାରେ ଏବେ ଥିବା ଅନେକ ସାଥୀ ଆସିଥିଲେ ଗଂଜାମ ପାର୍ଟିକୁ ତାଙ୍କରି ସମ୍ପାଦକତ୍ୱ ସମୟରେ ।

ରାଜନୀତି ଛାତ୍ର ସଂଘରୁ ଆରମ୍ଭ କୃଷକ ସଂଘର କର୍ମୀ ଓ ନେତା ରୂପେ ଜୀବନର ଶେଷ ପର୍ଯ୍ୟନ୍ତ ଓଡ଼ିଶାର କୃଷି ଓ କୃଷକ ଆନ୍ଦୋଳନକୁ ଦିଗଦର୍ଶନ ଦେଇ ଯାଇଛନ୍ତି ବିଶ୍ୱନାଥବାବୁ । ଜୀବନର ଆଦ୍ୟକାଳରେ ଛାତ୍ର ଅବସ୍ଥାରେ ଛାତ୍ର ସଂଘର ନେତା ରୂପେ କାର୍ଯ୍ୟ କରିଥିବା ସମୟରେ ଦେଖିଛନ୍ତି ଗଞ୍ଜାମର ଦୁର୍ବାର ରୟତ ଆନ୍ଦୋଳନ ପରେ ସାମିଲି ହୋଇଛନ୍ତି ସେଥିରେ ।

ବିଶ୍ୱନାଥ ବାବୁଙ୍କ ସହ ସଂପର୍କ ଆହୁରି ନିବିଡ଼ ହୋଇଥିଲା, ମୁଁ କମ୍ୟୁନଷ୍ଟ ପାର୍ଟିର ରାଜ୍ୟ ଦପ୍ତର ଭଗବତୀ ଭବନରେ କାର୍ଯ୍ୟ କରିବା ପରଠାରୁ । ସବୁବେଳେ ତାଙ୍କ ପ୍ରଶ୍ନ, କେମିତି ଅଛୁ । ଆଉ ଦୁଃଶାସନ ଓ ନବଘନ (ମୋର ଦାଦା ଦୁଃଶାସନ ଦେବ, ଏବଂ ବଡ଼ଭାଇ) ଘର ଖବର କ'ଣ ? ତାଙ୍କର ସ୍ନେହ ଓ ଶ୍ରଦ୍ଧା ଭୂଲି ପାରିବି ନାହିଁ ।

ଭଗବତୀ ଭବନରେ ପାର୍ଟିକାର୍ଯ୍ୟ ଓ ନୂଆ ଦୁନିଆର ସଂପାଦନା ବିଭାଗରେ କାର୍ଯ୍ୟ କରିବା ବେଳେ ଦେଖିଛି, ପରିଣତ ବୟସ ମଧରେ ଗଜପତି, କୋରାପୁଟ, ଜିଲ୍ଲାକୁ ଯାଉଥିଲେ ପାର୍ଟି କାମରେ । ଆଉ ନୂଆଦୁନିଆ ପାଇଁ ଗ୍ରାହକ ସଂଗ୍ରହ କରିବା ଥିଲା ତାଙ୍କର ଆଉ ଏକ ପେଶା । ଦୁଇ ଦୁଇ ଥର ଏମ. ଏଲ. ଏ., ଓ କମ୍ୟୁନିଷ୍ଟ ପାର୍ଟିର ଆଗଧଡ଼ିର ଜଣେ ତୁଙ୍ଗ ନେତା, କିନ୍ତୁ ତାଙ୍କଠାରେ ଅହମିକା ନଥିଲା ଓ ଗର୍ବ ନ ଥିଲା । ସେ ଥିଲେ ସମସ୍ତଙ୍କର ଆପଣାର ।

ମୃତ୍ୟୁତ ଅବଧାରିତ । ଜନ୍ମ ହେଲେ ମୃତ୍ୟୁ ହେବ । କିନ୍ତୁ ତାଙ୍କର ମୃତ୍ୟୁ ଏପରି ଏକ ସମୟରେ, ଯେଉଁ ଛତ୍ରପୁରଥିଲା ଅଜେୟ ଲାଲ ଦୁର୍ଗ, ଆଜି ତାହା ଉପରେ ଆକ୍ରମଣ । ଦେଶର ବାମପନ୍ଥୀ ଆନ୍ଦୋଳନ ମଧ ସଙ୍କଟ ମଧରେ । ଏହି ସଙ୍କଟରୁ ଉଦ୍ଧାର ପାଇବା ପାଇଁ ବିଶ୍ୱନାଥବାବୁଙ୍କ ସୁଦୀର୍ଘ ସଂଗ୍ରାମ ଓ ଆଦର୍ଶକୁ ପାଥେୟକରି ଆଗେଇବାକୁ ହେବ । ଜୀବନର ଶେଷ ପର୍ଯ୍ୟନ୍ତ ଆପଣାକୁ ନିୟୋଜିତ କରିଥିଲେ କମ୍ୟୁନିଷ୍ଟ ପାର୍ଟି ପାଇଁ ଏବଂ ଶୋଷିତ ଜନଗଣଙ୍କ ପାଇଁ ତାଙ୍କ ଅମ୍ଳାନ ସ୍ମୃତି ପ୍ରତି ଶ୍ରଦ୍ଧାଞ୍ଜଳି ।

ଅପଣ୍ଡା ନଗର, କଟକ - ୭୫୩୦୦୦

# ସାଧାରଣ ମଣିଷ: ଅସାଧାରଣ ପ୍ରତିଭା

ଡ଼. ଅମିୟ କୁମାର ମହାନ୍ତି

ଇତିହାସର ପୃଷ୍ଠାରେ ଆମେ ତିନି ପ୍ରକାର ବ୍ୟକ୍ତିତ୍ୱ ଦେଖିବାକୁ ପାଉ । କେତେକ ଓଳିଆରୁ ପଡି ଗଜା । ଆଉ କେତେ ମହାନତାକୁ ସଂଗ୍ରାମ କରି ଥାଆନ୍ତି । ଦ୍ୱିତୀୟ ସ୍ତରର ବ୍ୟକ୍ତିଙ୍କ ଉପରେ ପ୍ରତିଷ୍ଠା ଲଦି ଦିଆଯାଏ । ଇତିହାସରେ ସବୁଠାରୁ ସେହି ବ୍ୟକ୍ତି ସମ୍ମାନିତ ହୁଅନ୍ତି, ଯିଏ ସମୟ ପ୍ରତି ଦ୍ୱନ୍ଦ ପରିସ୍ଥିତି ସତ୍ୱେ ଆଗକୁ ବଢ଼ିଥାଏ । ତାର ବିକାଶ ଓ ପ୍ରଗତିର ପଥ ପୁଷ୍ପିତ ନୁହେଁ । ସମସ୍ତ କଥାକୁ ଏଡ଼େଇ ଏହି ସ୍ଥଳ ବିଶେଷରେ ରକ୍ତାକ୍ତ ହୋଇ ମଧ ସେ ଆଗକୁ ବଢ଼େ । ଇତିହାସର ଧାରାରେ ସେହି ଭଳି ଏକ ତୃତୀୟ ସ୍ତରର ବ୍ୟକ୍ତିତ୍ୱ ହେଲେ କମ୍ରେଡ ବିଶ୍ୱନାଥ ସାହୁ । ସମ୍ପ୍ରତି ତାଙ୍କର ଦେହାନ୍ତ ସମସ୍ତଙ୍କୁ ଶୋକାଭିଭୂତ କରିଛି । ଦକ୍ଷ ଓ ଅଂଗୀକାରବଦ୍ଧ, ଆଗ ଧାଡ଼ିର କମ୍ୟୁନିଷ୍ଟ ନେତା, ଛତ୍ରପୁର ନିର୍ବାଚନମଣ୍ଡଳୀର ଦୁଇ ଦୁଇ ଥର ବିଧାୟକ ନିର୍ବାଚିତ । ସାଲିସବିହୀନ ସଂଗ୍ରାମୀ ନେତା ବିଶ୍ୱନାଥ ସାହୁଙ୍କ ୯୧ ବର୍ଷ ବୟସରେ ମୃତ୍ୟୁ ସମଗ୍ର ବାମପନ୍ଥୀ ଆନ୍ଦୋଳନ କ୍ଷେତ୍ରରେ ଏକ ଅପୂରଣୀୟ କ୍ଷତି ।

ସାଧାରଣ ମଣିଷ ଟିଏ । ବାହାରୁ ଦେଖିଲେ ଜଣା ପଡ଼େ ନାହିଁ ଯେ ତାଙ୍କ ଭିତରେ ଏତେ ଅସାଧାରଣ ପ୍ରତିଭାର ସମାରୋହ । ସଂଗ୍ରାମରେ ଜନ୍ମ, ସଂଗ୍ରାମରେ ଦୃଢ଼ ଏବଂ ସର୍ବଶେଷରେ ସଂଗ୍ରାମରେ ବିଭର । ଚାଷୀ, ମଜଦୁର, କୃଷି ଶ୍ରମିକ, ଶିକ୍ଷକ, ଯୁବକ ସମସ୍ତଙ୍କ ପାଇଁ ସେ ଥିଲେ ପ୍ରେରଣାର ଉତ୍ସ । ଦୃଢ଼ ଯୁକ୍ତି, ବ୍ୟାବାହାରିକ ପ୍ରୟୋଗ ଏକ ସରଳ ଜୀବନ ପର୍ଯ୍ୟାୟରେ ସେ ସମସ୍ତଙ୍କୁ ଆଶିର୍ବାଦ କରୁଥିଲେ । ବିଧାୟକ ହିସାବରେ ବିଧାନସଭା ଗୃହରେ ଓଡ଼ିଶାର କୃଷି, ଜଳସେଚନ, ଶିକ୍ଷାର ଜ୍ୱଳନ୍ତ ସମସ୍ୟାକୁ ଦୃଢଭାବେ ଉପସ୍ଥାପିତ କରି ସେ ସମସ୍ତଙ୍କର ପ୍ରିୟପାତ୍ର ହୋଇ ପାରିଥିଲେ । ବିଧାନସଭା ସମ୍ମୁଖରେ ଧାରଣାରତ ବିଭିନ୍ନ ସଂଗଠନ ମାନଙ୍କ ସହ ନିଜେ ଉପସ୍ଥିତ ରହି ସେ କେବଳ ଉଦ୍‌ବୋଧନ ହେଉନଥିଲେ, ଅଧିକ ଆନ୍ଦୋଳନକୁ କିପରି ସରଳ କରାଯାଇପାରିବ ତାହାର କୌଶଳ ସଂପର୍କରେ ପରାମର୍ଶ ମଧ ଦେଉଥିଲେ ।

ଛତ୍ରପୁରରେ ମୋର ଛାତ୍ର ଏବଂ କର୍ମଜୀବନର ଜୀବନର ବହୁ ବର୍ଷ କଟିଛି । ବିଶ୍ୱନାଥ ବାବୁଙ୍କ ସହ ବ୍ୟକ୍ତିଗତ ଓ ଭାବଗତ ମେଳନ ବି ରହିଛି । ବିଧାୟକ ଏବଂ ଜନତାର ସଂଗ୍ରାମୀ ନେତା ହିସାବରେ ନିଷ୍ଠାପର କାର୍ଯ୍ୟକଳାପକୁ ମୁଁ ନିରବରେ ଅଧ୍ୟୟନ କରିଛି ଏବଂ ପ୍ରଭାବିତ ମଧ ହୋଇଛି । ଛତ୍ରପୁର କଲେଜରେ ମୁଁ ଅଧାପନା କରୁଥିବା ସମୟରେ ସବୁ ମାସରେ ସେ ମୋ ଘରକୁ ଏବଂ କଲେଜକୁ ଆସି ଆଞ୍ଚଳିକଠାରୁ ଆନ୍ତର୍ଜାତୀୟ ସମସ୍ୟା ଏବଂ ଦୃଶ୍ୟପଟ ଉପରେ ବୌଦ୍ଧିକ ଆଲୋଚନା କରନ୍ତି । ବିଧାୟକ ହିସାବରେ ଛତ୍ରପୁର ନିର୍ବାଚନମଣ୍ଡଳୀରେ ଶିକ୍ଷା, ସ୍ୱାସ୍ଥ୍ୟ, ଜଳସେଚନ, କୃଷି ଏବଂ ଗମନାଗମନ ଦିଗରେ ସେ ବହୁ ମିଳାମିଶା ପ୍ରସ୍ତାବକୁ ଗ୍ରହଣ କରି ସମସ୍ତଙ୍କ ପ୍ରିୟ ଭାଜନ ହୋଇପାରିଥିଲେ । ସାଧାରଣ ମଣିଷ, ଚାଲିଚଳନରେ ଜନଜୀବନ ସହିତ ମିଶି ନିଜର ବ୍ୟକ୍ତିତ୍ୱ, କିନ୍ତୁ ବୌଦ୍ଧିକ ଦୃଷ୍ଟିକୋଣରୁ ପ୍ରଚଣ୍ଡ ପ୍ରତିଭାର ଅଧିକାରୀ ଥିଲେ ।

ନବ୍ୟ ଉଦାରବାଦୀ ଅର୍ଥନୀତିରେ ସମଗ୍ର ସମାଜ ଆଜି ଯେତେବେଳେ କ୍ଷତାକ୍ତ, ସାଧାରଣ ମଣିଷର ସ୍ୱର ଯେତେବେଳେ କ୍ଷମତା ଅଳିନ୍ଦରେ ପହଁଞ୍ଚିବା କଷ୍ଟସାଧ, ତା'ସାଙ୍ଗକୁ ଦେଶର ଐକ୍ୟ, ଅଖଣ୍ଡତା, ଗଣତାନ୍ତ୍ରିକ ଚେତନା ଯେତେବେଳେ କଠିନ ପରୀକ୍ଷାର ସମ୍ମୁଖୀନ ହୁଅନ୍ତି, ଠିକ୍ ସେତିକି ବେଳେ କମ୍ରେଡ ସାହୁଙ୍କ ବିଦାୟ ସମସ୍ତ ବାମପନ୍ଥୀ ଏବଂ ଗଣତାନ୍ତ୍ରିକ ଚିନ୍ତାଧାରାର ଲୋକ ଏବଂ ଅନୁଷ୍ଠାନ ପାଇଁ ଅନେକ ଦାରୁଣ ଦୁଃଖ ଓ ଆଘାତ ଦେଇଛି । ଆଜିର ଏହି ଶୋକାକୁଳ ପରିବେଶରେ ସର୍ବଦା ସାଥୀ ସାହୁଙ୍କ ଆଦର୍ଶ ସମସ୍ତ ଦେଶବାସୀଙ୍କୁ ଅବିଚଳିତ ହୋଇ ତାଙ୍କରି ସଂଗ୍ରାମର ପଥରେ ଆଗେଇ ନେବ- ଏହାହିଁ କାମନା ।

*ପ୍ରଶାସନିକ ଅଧିକାରୀ,*
*ରାଜ୍ୟ ଉଚ୍ଚଶିକ୍ଷା ପରିଷଦ*

# ବିଶ୍ୱନାଥ ସାହୁ : ଏକ ସମର୍ପିତ କମ୍ୟୁନିଷ୍ଟ

ରାମକୃଷ୍ଣ ପଣ୍ଡା

ଚାଳିଶି ଦଶକର କଥା, ବ୍ରିଟିଶ୍ ସାମ୍ରାଜ୍ୟବାଦ ବିରୋଧି ଆନ୍ଦୋଳନ ତୀବ୍ର ରୂପ ଧାରଣ କରିଥାଏ । ଯୁବ-ଛାତ୍ର ଆନ୍ଦୋଳନକୁ ପ୍ରତିହତ କରିବା ଉଦ୍ଦେଶ୍ୟରେ ସାମ୍ରାଜ୍ୟବାଦ ବିରୋଧି ଏବଂ ସମାଜବାଦର ସ୍ୱପ୍ନରେ ବିଭୋର ଭଗତ ସିଂ ଓ ସାଥିମାନଙ୍କୁ ଦିଆଯାଇଥିବା ଫାସି ଓ ଜେଲଦଣ୍ଡ ଭାରତ ବର୍ଷର ଛାତ୍ର ଆନ୍ଦୋଳନକୁ ନିର୍ବାପିତ କରିବା ବଦଳରେ ଅଧିକ ପ୍ରଜ୍ୱଳିତ କରୁଥାଏ । ୧୯୩୯ ମସିହାରେ ବ୍ରିଟିସ୍ ମାମ୍ରାଜ୍ୟବାଦ ବିରୋଧି ସଂଗ୍ରାମର ଅଗ୍ନିଗର୍ଭରୁ ଅଖିଳ ଭାରତ ଛାତ୍ରସଂଘ (ଏ.ଆଇ.ଏସ୍.ଏଫ) ଜନ୍ମ ନେଇସାରିଥାଏ । ୧୯୩୯ରୁ ଆରମ୍ଭ ହୋଇଥିବା ଦ୍ୱିତୀୟ ବିଶ୍ୱଯୁଦ୍ଧ, ହିଟଲର ର ସୋଭିଏତ ଆକ୍ରମଣ ପରେ ଜନଯୁଦ୍ଧର ରୁପ ନେଇଥାଏ । ସାରା ବିଶ୍ୱ ଅପେକ୍ଷା କରିଥାଏ ହିଟଲର ଓ ଫାସିବାଦର ପରାଜୟକୁ ସେତେବେଳେର ଛାତ୍ର ନେତା ପ୍ରଖ୍ୟାତ କବି ସଚି ରାଉତରାଏଙ୍କ ଭାଷାରେ "କହିଛି ଷ୍ଟାଲିନ.......

ଏପ୍ରିଲ ପଚିସ ଆଗୁ ଲାଲସେନା ଘେରିବେ ବର୍ଲିନ !

ଷ୍ଟାଲିନର କଥାକେବେ ହୁଏନାହିଁ ମିଛ,

ଦୁନିଆର ପଞ୍ଜୀକାର ଏକଥା ତ ଅଙ୍ଗେ ନିଭେଇଚ !!

ନୁହେଁ ଏହା ତମ ଆମ କଥା

ଷ୍ଟାଲିନ୍‌ର କଣ୍ଠେ ଏହା କହିଅଛି ବିଶ୍ୱର ଜନତା" ।।

୯ ମଇ ୧୯୪୫ ସେଭିଏତ ଲାଲସେନା ଫାସିବାଦି ହିଟଲରକୁ ପରାଜିତ କରେ । ସାର ପୃଥିବୀର ଶାନ୍ତିକାମି ଶ୍ରମଜିବି ମଣିଷ ସହ ତାଳ ଦେଇ ଆମ ଦେଶର ଛାତ୍ର ସମାଜ ଫାସିବାଦ ଉପରେ ବିଜୟର ଉତ୍ସବ ପାଳନ କରିବା ସହ, ବ୍ରିଟିସ୍ ସାମ୍ରାଜ୍ୟବାଦକୁ ଏ ଦେଶରୁ ତଡ଼ିବା ପାଇଁ ଛାତ୍ର ଆନ୍ଦୋଳନର ଜୁଆର ସୃଷ୍ଟି ହୁଏ । ସେତିକିବେଳେ ଆରମ୍ଭ ହୁଏ ଆଇ.ଏନ୍. ଏ. ର ତିନି ମହାରଥୀ ସେହଗଲ, ଧିଲନ୍ ଓ ସାହାନୱାଜ ଖାନ୍‌ଙ୍କ ବିଚାର ସରା ଦେଶର ଛାତ୍ର ସମାନ ଏ.ଆଇ.ଏସ୍.ଏଫର ଆହ୍ୱାନର ପ୍ରତିବାଦ ମୁଖର । ସମସ୍ତ ପ୍ରମୁଖ ଶିକ୍ଷାନୁଷ୍ଠାନମାନଙ୍କରୁ ୟୁନିୟନ୍‌ଜ୍ୟାକ ହଟାଇ ତ୍ରିରଙ୍ଗା ଉତ୍ତୋଳନ କରିବା ଓ ଆ.ଏନ୍.ଏର ତିନି ସେନାଧକ୍ଷଙ୍କୁ ମୁକ୍ତି ଦାବିରେ ଆନ୍ଦୋଳନର ନିଆଁ ସାରା ଦେଶକୁ ପ୍ରସାରିତ ହୁଏ । ଓଡ଼ିଶାରେ ମଧ ଏହି ଛାତ୍ର ଆନ୍ଦୋଳନ ଅତି ତିବ୍ର ହୋଇ ରେଭେନ୍‌ସା ଓ ଖଲିକୋଟ୍ ମହାବିଦ୍ୟାଳୟର ସୀମାଟପି ବିଭିନ୍ନ ସ୍କୁଲକୁ ପ୍ରସାରିତ ହୁଏ । ଦେଶ ପ୍ରେମର ଉନ୍ମାଦନା ସୃଷ୍ଟି କରେ ଯୁବ ପିଢ଼ି ମଧରେ । ସେହି ସମୟରେ ଗଂଜାମ ଜିଲ୍ଲା ପୁରୁଷୋତ୍ତମପୁର

ନରସିଂହ ଦାସ ଉଚ୍ଚବିଦ୍ୟାଳୟରେ ଅଧ୍ୟୟନରତ ବଡ଼ କୁଣସ୍ଥଳିର ବିଶ୍ୱନାଥ ସାହୁ ଯୋଗ ଦିଅନ୍ତି ଛାତ୍ରସଂଘରେ । ୧୯୪୫ ମସିହାରେ ସ୍କୁଲ ଛାତ୍ର ବିଶ୍ୱନାଥ ସାହୁ ସଂକଳ୍ପ ନିଅନ୍ତି ସାମ୍ରାଜ୍ୟବାଦ କୁ କବର ଦେଇ ଏକ ସମାଜବାଦୀ ଭାରତବର୍ଷ ପ୍ରତିଷ୍ଠା କରିବାକୁ । ୧୯୪୬ରେ ସେ ଭାରତୀୟ କମ୍ୟୁନିଷ୍ଟ ପାଟିର ସଭ୍ୟପଦ ଗ୍ରହଣ କରନ୍ତି । ବିଶ୍ୱନାଥ ନେତୃତ୍ୱ ନିଅନ୍ତି ଛାତ୍ର ଆନ୍ଦୋଳନର, ଗଂଜାମ ଜିଲ୍ଲା ସହସମ୍ପାଦକର ପୁଣି ସମ୍ପାଦକ ଦାୟିତ୍ୱ ନିଅନ୍ତି । ଏ.ଆଇ.ଏସ୍.ଏଫର ଓଡ଼ିଶା ରାଜ୍ୟ ପ୍ରତିନିଧିଭାବେ ଅନ୍ୟମାନଙ୍କ ସହ ସେ ପହଞ୍ଚନ୍ତି ବମ୍ବେ ୧୧ତମ ଜାତୀୟ ସମ୍ମିଳନୀରେ ଯୋଗ ଦେବା ପାଇଁ । ଏ.ଆଇ.ଏସ୍. ଏଫ. ବ୍ରିଟିସ୍ ସାମ୍ରାଜ୍ୟବାଦ କବଳରୁ ମୁକ୍ତ ନବ ଗଠିତ ସାଧିନ ଭାରତ ବର୍ଷର ସଂବିଧାନକୁ ଗ୍ରହଣ କଲେ ମଧ ସଂବିଧାନ ମଧରେ, ୨୧ ପରିବର୍ତ୍ତେ ୧୮ ବର୍ଷରେ ଭୋଟ ଦାନର ଅଧିକାର । ଶିକ୍ଷା ଓ ନିଯୁକ୍ତିକୁ ମୌଳିକ ଅଧିକାର ଭୁକ୍ତି କରିବା । ସମାଜିକ ଓ ଅର୍ଥନୈତିକ ସମାନତାର ଦାବିରେ ସଂଗ୍ରାମକୁ ତେଜିୟାନ କରୁଥାଏ । ମୋରାଜି ଦେଶାଇ ନେତୃତ୍ୱାଧିନ ବମ୍ବେ ସରକାର ସମ୍ମିଳନୀକୁ ଅନୁମତି ଦେଲେ ନାହିଁ । ୨୬ଡ଼ିସେମ୍ବରରୁ ସମ୍ମିଳନୀ ଲୁକ୍କାୟିତ ଭାବେ ଅରମ୍ଭ ହେଲା । ୨୮ ଡ଼ିସେମ୍ବର ଦିନ ଏ.ଆଇ.ଏସ୍.ଏଫ ନିଷ୍ପତ୍ତି ନେଲା । ସରକାରଙ୍କ ଅନୁମତି ବିନା ଖୋଲା ଅଧିବେଶନ ଓ ଶୋଭାଯାତ୍ରା କରିବା ପାଇଁ । ଶୋଭାଯାତ୍ରା ଆରମ୍ଭ ହେଲା । ହଜାର ହଜାର ଛାତ୍ର ନେତାଙ୍କ ସହ ଶୋଭାଯାତ୍ରାରେ ଯୋଗଦେଲେ ବିଶ୍ୱନାଥଙ୍କ ସହ ଅନ୍ୟ ଓଡ଼ିଶା ପ୍ରତିନିଧି । ଶୋଭାଯାତ୍ରାରୁ ଉପରେ ପୋଲସ୍‌ର ଲାଠି ବର୍ଷା. ବନ୍ଧୁକର ଗର୍ଜନ, ନିଖୋଜ ହେଲେ ଅନେକ ଛାତ୍ର ନେତା । ଶହ ଶହ ଛାତ୍ର ନେତା ଗୁରୁତର ଭାବେ ବିଭିନ୍ନ ହସ୍‌ପିଟାଲରେ ପହଞ୍ଚିଲେ ମିଳିଲେନି ବିଶ୍ୱନାଥ ସାହୁ ସାଥିମାନେ ବିୟୋଗରେ ଦୁଃଖକୁ ହୃଦୟରେ ନେଇ ଫେରିଲେ ଓଡ଼ିଶା । ଛାତ୍ର ଶୋଭାଯାତ୍ରା ଉପରେ ଲାଠିମାଡ଼ ବିରୋଧରେ ଦେଶବ୍ୟାପି ଆରମ୍ଭ ହେଲା ପ୍ରତିବାଦ । ୯ ଜାନୁୟାରୀ ୧୯୪୮ରେ ବମ୍ବେରେ ହେଲା ବିଶାଳ ପ୍ରଦର୍ଶନ । ବିଶ୍ୱନାଥ ସାହୁ ସମସ୍ତଙ୍କୁ ଚମତ୍କୃତ କରି ଉଭାହେଲେ ଏହି ବିକ୍ଷୋଭ ପ୍ରଦର୍ଶନରେ । ଖବର ପହଞ୍ଚିଲା ଓଡ଼ିଶାରେ, ଗୁରୁତର ଅବସ୍ଥାରେ ଭର୍ତ୍ତିଥିଲେ ବିଶ୍ୱନାଥ ଏକ ହସ୍‌ପିଟାଲରେ ଏବେ ଭଲ ହେଲେଣି ଫେରିବେ ଓଡ଼ିଶା

ପାର୍ଟିର ନିଷ୍ପତ୍ତିରେ ବଶ୍ୱନାଥ ସାହୁ କୃଷକମାନଙ୍କୁ ସଂଗଠିତ କରିବାର ଦାୟିତ୍ୱ ଗ୍ରହଣ କଲେ । ମୋହନ ଦାଶ, ପ୍ରାଣନାଥ ପଟ୍ଟନାୟକ, ଗୋବିନ୍ଦ ପ୍ରଧାନ, ହରିହର ଦାସ, ସାଧୁ ମହାନ୍ତିଙ୍କ ସହ ମିଶି ନେତୃତ୍ୱ ନେଲେ ଜମିଦାର, ଇମାମ୍‌ଦାର ବିରୋଧି ଆନ୍ଦୋଳନର ସାଙ୍ଗରେ ସାଥୀ ସଦାନନ୍ଦ ମହାନ୍ତି, ଦ୍ୱିତୀକୃଷ୍ଣ ପଣ୍ଡା ହରିବନ୍ଧୁ ବେହେରା ଲଙ୍ଗଳ ଯାର ଜମି ତାର ନାରାରେ ଗୁଞ୍ଜରିତ ହେଲା ସାରା ରାଜ୍ୟ । ସାଧୁ ମହାନ୍ତିଙ୍କ ସାହାର୍ଯ୍ୟରେ ବିଶ୍ୱନାଥ ସାହୁ ଓ ଅନ୍ୟ ସାଥୀମାନେ ଚମାଖନ୍ତି ଓ ଛତ୍ରପୁର ଅଞ୍ଚଳର ଗାଁ ଗାଁକୁ ସଂଗଠିତ କରିବାକୁ ଲାଗିଲେ । କମ୍ୟୁନିଷ୍ଟ ପାର୍ଟି ସାରା ଜିଲ୍ଲାରେ ପ୍ରଭାବ ବିସ୍ତାର କଲା ଓ ଏହାର ପ୍ରଭାବ ୧୯୫୨ ନିର୍ବାଚନରେ ପ୍ରତିଫଳିତ ହେଲା । ବିଶ୍ୱନାଥ ସାହୁ କୃଷକ ଓ କମ୍ୟୁନିଷ୍ଟ ଆନ୍ଦୋଳନର ଜଣେ ଲଡୁଆ ତଥା ସର୍ବାଜନଦୃତ ନେତା ଭାବେ

ପରିଚିତି ଲାଭକଲେ । କୃଷକ ଓ କମ୍ୟୁନିଷ୍ଟ ଆନ୍ଦୋଳନର ନେତୃତ୍ୱ ନେଇ ସେ ବାରଂବାର ସାତ ବର୍ଷ ଜେଲ୍ ଜୀବନକୁ ବରିନେଇଥିବା ବେଳେ ବହୁବର୍ଷ ଭୂମିଗତ ହୋଇ ପାର୍ଟିକୁ ନେତୃତ୍ୱ ଦେଇ ଆସିଥିଲେ । ବାରଂବାର ନିଜ ଗାଁରୁ ନିର୍ଦ୍ୱନ୍ଦରେ ସରପଞ୍ଚ ଓ ପଞ୍ଚାୟତ ସମିତ ସଭ୍ୟମାନେ ନିର୍ବାଚିତ ହୋଇଥିବା ବିଶ୍ୱନାଥ ସାହୁ ୧୯୭୭ ଓ ୧୯୯୦ ମସିହାରେ ଦୁଇଥର ବିଧାନସଭାକୁ ନିର୍ବାଚିତ ହୋଇଥିଲେ । ବିଧାନ ସଭା କାଳରେ ବିପ୍ଳବି ନାଗଭୂଷଣ ପଟ୍ଟନାୟକଙ୍କୁ ଫାସି କବଳରୁ ରକ୍ଷା କରିବା ପାଇଁ ପ୍ରସ୍ତାବ ପାରିତ କରିବା ଓ ସାଧାରଣ ମଣିଷର କଥାକୁ ବିଧାନ ସଭାରେ ଉପସ୍ଥାପିତ କରିବା ସବୁଥିରେ ସେ ସାକ୍ଷର ଛାଡ଼ିଯାଇଛନ୍ତି ।

ବିଶ୍ୱଶାନ୍ତି ଆନ୍ଦୋଳନରେ ନିଜର ଯୋଗଦାନ ପାଇଁ ସ୍ମରଣିୟ ହୋଇ ରହିବେ । ଭାରତ - ସୋଭିଏତ୍ ମୈତିସଂଘ (ISCUS) ଓ ପରବର୍ତ୍ତୀ କାଳରେ, ଅଖିଳ ଭାରତ ଶାନ୍ତି ଓ ସଂହତି ସଂଘକ୍ (AIPSO) ସଂଘଠିତ କରିବା ସହ ଏହାର ରାଜ୍ୟ ସଭାପତି ମଣ୍ଡଳୀର ସଦସ୍ୟ ରହି ଆସିଥିଲେ । ଶିକ୍ଷାର ପ୍ରସାରରେ ବିଶେଷ ଭୂମିକା ନିର୍ବାହ କରିବା ସହ ବହୁ ଶିକ୍ଷାନୁଷ୍ଠାନ (ପାଠ ଦୋକାନ ନୁହେଁ) ପ୍ରତିଷ୍ଠା କରିଥିଲେ । ପୁରୁଷୋତ୍ତମପୁର ହିନ୍ଦୀ ମହାବିଦ୍ୟାଳୟକୁ ବିଶ୍ୱବିଦ୍ୟାଳୟରେ ପରିଣତ କରିବା ପାଇଁ ଶେଷ ନିଶ୍ୱାସ ପର୍ଯ୍ୟନ୍ତ ଆପ୍ରାଣ ଉଦ୍ୟମ କରୁଥିଲେ । କୃଷକ ଆନ୍ଦୋଳନର ମହାରଥି ବିଶ୍ୱାନଥ ସାହୁ କୃଷକ ସଭାରେ ଗଂଜାମ ଜିଲ୍ଲା ସଂମ୍ପାଦକ, ରାଜ୍ୟ ସମ୍ପାଦକ ସଭାପତି, ଓ ସର୍ବୋପରି ଜାତୟ କାର୍ଯ୍ୟକାରି କମିଟିର ସଦ୍ୟ ଥିଲେ । ଗଂଜାମ ଜିଲ୍ଲା ପାର୍ଟିର ସର୍ବାଧିକ ସମୟ ସମ୍ପାଦକ ଓ ରାଜ୍ୟ ସମ୍ପାଦକ ମଣ୍ଡଳୀରେ ଦାୟିତ୍ୱ ନିର୍ବାହ କରିଥିଲେ । ଶେଷ ପର୍ଯ୍ୟନ୍ତ ପାର୍ଟିର ସମ୍ମାନ ଜନକ କଣ୍ଟ୍ରୋଲ କମିଶନ ଅଧ୍ୟକ୍ଷ ଥିଲେ । ଆତ୍ମ ପ୍ରଚାରରୁ ବହୁ ଦୂରରେ ରହୁଥିବା ଓ ଠୋ ଠା କଥା ଏବଂ ତୀକ୍ଷଣ୍ ଉଚ୍ଚାରଣ ପାଇଁ ପରିଚିତ ବିଶ୍ୱନାଥ ସାହୁ ପାର୍ଟି ସାଥି କିମ୍ବା ନେତୃତ୍ୱକୁ ଅକାରଣ ସମାଲୋଚନା, କୁତ୍ସା, ପାର୍ଟି ଫୋରମ ବାହାରେ ଆଲୋଚନାର ତିକ୍ତ ବିରୋଧି ଥିଲେ ଏବଂ କୌଣସି ପରିସ୍ଥିତିରେ ସେ ଏଥିରେ ନିଜକୁ ସାମିଲ କରୁନଥିଲେ । ଅପର ପକ୍ଷରେ ନେତୃତ୍ୱ ମଧରେ ଅଧିକରୁ ଅଧିକ ସମନ୍ୱୟ, ଅନ୍ୟର କାର୍ଯ୍ୟ ଧାରାକୁ ଗ୍ରହଣ କରିବା ଓ ସମ୍ମାନ ଦେବାରେ ସେ ଥିଲେ ଦୃଢ଼ ବିଶ୍ୱାସୀ ।

ବିଶ୍ୱନାଥ ବାବୁ ଥିଲେ ଜଣେ ସମର୍ପିତ କମ୍ୟୁନିଷ୍ଟ । କମ୍ୟୁନିଷ୍ଟ ପାର୍ଟିରେ ବାରବଂାର ବିଭାଜନ ତା'ଙ୍କୁ ବ୍ୟଥିତ କରୁଥିଲା । କମ୍ୟୁନିଷ୍ଟମାନଙ୍କ ନାମରେ କୁତ୍ସା, ଜଣେ ଅନ୍ୟ ଜଣକୁ ଗାଳିଦେଇ ନିଜକୁ ପ୍ରକୃତ ବିପ୍ଳବୀ ରୂପେ ପ୍ରତିପାଦିତ କରିବାର ଅପଚେଷ୍ଟା, କୌଣସି ପାର୍ଟିକୁ ସୁଦୃଢ଼ କରିବା ବଦଳରେ ସମଗ୍ର ଆନ୍ଦୋଳନ ଦୁର୍ବଳ କରୁଛି ବୋଲି ସେ ଦୃଢ଼ ଭାବେ ବିଶ୍ୱାସ କରୁଥିଲେ ବିଶ୍ୱନାଥ ବାବୁ ସବୁବେଳେ କହୁଥିଲେ କମ୍ୟୁନିଷ୍ଟମାନଙ୍କ ଜନ୍ମ ଲଗ୍ନରୁ ଶ୍ରେଣୀ ଶତ୍ରୁମାନେ କୁତ୍ସାରଟନା କରି ଆସୁଛନ୍ତି । ନିଜର ଜ୍ଞାତସାରରେ ବା ଅଜ୍ଞାତ ସାରରେ କିଛି ତଥାକଥିତ ବୁଦ୍ଧିଜୀବି (ଏନ.ଜି.ଓ) ମାନଙ୍କ ସାହାଯ୍ୟରେ ପ୍ରକୃତ ଗଣତାନ୍ତ୍ରିକ ଆନ୍ଦୋଳନ ବଦଳରେ ତଥାକଥିତ ଜନ ଆନ୍ଦୋଳନ ତିଆରି କରି କାଠ କୁରାଢ଼ିର ବେଣ୍ଟ ହୋଇ ଗଛ କାଟିବା ପରି

ବାମପନ୍ଥୀ/ଗଣତାନ୍ତ୍ରିକ ଆନ୍ଦୋଳନକୁ ଦୁର୍ବଳ କରୁଛନ୍ତି । ସମୟର ଐତିହାସକ ଆବଶ୍ୟକତା ହେଉଛି ସମସ୍ତ ବାମପନ୍ଥୀ ଶକ୍ତିମାନଙ୍କୁ ଏକାଠି କରିବା ।

ଆଜି କିନ୍ତୁ ସାରା ଦେଶରେ ଗୈରିକି ଆକ୍ରମଣ ତୀବ୍ର ହୋଇଛି । ହିନ୍ଦୁ ମୌଳବାଦ ଧର୍ମାନ୍ଧତାର ତାଣ୍ଡବ, ସଂଘ ପରିବାର ବି.ଜେ.ପି ଏବି.ଭି.ପି ନେତୃତ୍ୱରେ ଶିକ୍ଷାନୁଷ୍ଠାନ, ବୁଦ୍ଧିଜିବିଙ୍କ ଉପରେ ଆକ୍ରମଣ ମଧ୍ୟରେ ସିମିତ ହୋଇନାହିଁ । ଦେଶର ଗଣତାନ୍ତ୍ରିତ ଧର୍ମନିରପେକ୍ଷ ଢାଞ୍ଚା ଉପରେ ଆରମ୍ଭ ହୋଇଛି ପ୍ରଚଣ୍ଡ ଆକ୍ରମଣ । ଆକ୍ରମଣର ପ୍ରତିରୋଧ ମଧ ଆରମ୍ଭ ହୋଇଛି । ଯୁବ ଛାତ୍ର ପ୍ରତିବାଦ ମୁଖର ହୋଇ ଉଠିଛନ୍ତି । ଗୈରିକ ତାଣ୍ଡବ ବିରୁଦ୍ଧରେ ସମସ୍ତ ଗଣତାନ୍ତ୍ରିକ ଶକ୍ତି ଏକାଠି ହେବା ନିଶ୍ଚିତ ଭାବେ ଦେଶର ଯୁବପିଢି ମଧ୍ୟରେ ନୂତନ ଉନ୍ମାଦନା ସୃଷ୍ଟି କରିଛି । କିନ୍ତୁ ଏପରି ସମୟରେ ଆମକୁ ଉତ୍ସାହିତ କରିବା ପାଇଁ, ସାହାସ ଦେବା ପାଇଁ ଆମ ନେତା ବିଶ୍ୱନାଥ ସାହୁ ସଶରିରେ ଆମ ସହ ଆଉ ନାହାନ୍ତି । ଗତ ୧୮ ତାରିଖ ଦିନ ତାଙ୍କ ପ୍ରିୟ ଗ୍ରାମ କୁସସ୍ଥଳୀରେ ପ୍ରିୟ ପାର୍ଟି, ସାଥି, ସହୋଦର, ଏବଂ ୭୦ ବର୍ଷ ଧରି ତିଆରି କରିଥିବା ତାଙ୍କ ବିରାଟ ପରିବାରକୁ ଛାଡି ସେ ବିଦାୟ ନେଇଛନ୍ତି । ହଜାର ହଜାର ସାଥି ସମର୍ଥକ ଆଜି ବିଶ୍ୱନାଥଙ୍କୁ ଝୁରୁଛନ୍ତି । ଆଖିରୁ ଲୁହ ବୁହାଉଛନ୍ତି କେବଳ ଝୁରିଲେତ ହେବନି ଲୁହ ଆଖିରୁ ପୋଛିବାକୁ ହେବ । ସଂକଳ୍ପ ନେବାକୁ ହେବ । କମ୍ୟୁନିଷ୍ଟଭାବେ ନିଜର ଦାୟିତ୍ୱ ନିର୍ବାହ କରିବାକୁ ହେବ । ବିଶ୍ୱନାଥ ବାବୁ ଯେଉଁ ବାମପନ୍ଥି ଆନ୍ଦୋଳନ ନିଷ୍ଠାର ସହ ସମର୍ପିତ ଭାବେ ଜୀବନ ତମାମ କାର୍ଯ୍ୟ କରି ଆସୁଥିଲେ ଆଜିର ପରିସ୍ଥିତିରେ ସେ କାର୍ଯ୍ୟକୁ ଆଗକୁ ନେବାକୁ ହେବ ଦେଶକୁ ସାଂପ୍ରଦାୟିକତା କବଳରୁ ରକ୍ଷା କରିବାପାଇଁ ସମସ୍ତ ବାମପନ୍ଥୀ, ଧର୍ମନିରପେକ୍ଷ ଓ ଗଣତାନ୍ତ୍ରିକ ଶକ୍ତିକୁ ଏକାଠି କରି ମହାସଂଗ୍ରାମ ଆରମ୍ଭ କରିବାକୁ ହେବ । ଏହା ଏହି ସମର୍ପିତ କମ୍ୟୁନିଷ୍ଟ ବିଶ୍ୱନାଥ ସାହୁଙ୍କ ପ୍ରତି ପ୍ରକୃତ ଶ୍ରଦ୍ଧାଞ୍ଜଳି ସହ ଐତିହାସିକ ଆବଶ୍ୟକତା । ଏହି ସଂକଳ୍ପ ସହ ମୋର ନେତା ସାଥି ବିଶ୍ୱନାଥ ସାହୁଙ୍କୁ ଅଶ୍ରୁଳ ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।

# ଏପରି କମ୍ୟୁନିଷ୍ଟଟିଏ ବିରଳ

ଭଗବାନ ସାହୁ

୧୯୪୬ ମସିହା ଜୁନ ୨ ତାରିଖରେ ବିଶ୍ୱନାଥ ସାହୁ ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ସଭ୍ୟ ହୋଇଥିଲେ । ଏବଂ ଜଣେ ନିଷ୍ଠାପର କମ୍ୟୁନିଷ୍ଟ ଭାବେ ଶେଷ ଜୀବନ ପର୍ଯ୍ୟନ୍ତ ସକ୍ରିୟ ରହିଥିଲେ । ୧୯୪୩ ମସିହାରେ ଭାରତୀୟ କମ୍ୟୁନିଷ୍ଟ ଦଳର ଗଞ୍ଜାମ ଜିଲ୍ଲା ଶାଖା ଗଠିତ ହୋଇଥିଲା, ଗଞ୍ଜମ ଜିଲ୍ଲାରେ ସାମନ୍ତବାଦୀ ଶୋଷଣରବର୍ଗର ମୁସ୍ତାଦର ପ୍ରଥାର ଉଚ୍ଛେଦ ଲାଗି ଚାଷୀମାନେ ଏକାଠି ହେଉଥିଲେ । ମୁସ୍ତାଦାରମାନେ ମଧ୍ୟସତ୍ତ୍ୱାଧିକାରୀ ଜମିମାଲିକ । ଫସଲ ଖଜଣା ଆଦାୟ ପାଇଁ ଜମିଦାରମାନେ କେତେଖଣ୍ଡ ଗ୍ରାମକୁ ରୁଣ ଦେଉଥିଲେ ଏବଂ ଶୁବାଦାରଙ୍କ ଜରିଆରେ ଚାଷୀଠାରୁ ଅଧାରୁ ଉର୍ଦ୍ଧଭାଗ ଫସଲ ଆଦାୟ କରୁଥିଲେ । ସେପରି ଯେଉଁ ଜମିଦାରମାନେ ବ୍ରିଟିଶ୍ ସରକାରଙ୍କୁ ଖଜଣା ଦେଇ ପାରୁନଥିଲେ, ସେମାନଙ୍କ ଜମି ନିଲାମକରାଯାଇ ଖଜଣା ଆଦାୟ କରାଯାଉଥିଲା । ଏହି ନିଲାମଧାରୀମାନଙ୍କୁ ମଧ୍ୟସତ୍ତ୍ୱାଧୀକାର ମୁସ୍ତାଦାର ବୋଲି କୁହାଯାଏ । ଏମାନଙ୍କ ଶୋଷଣରେ ଚାଷୀମାନେ ଅତିଷ୍ଠ ଥିଲେ । ୧୯୩୩ ମସାହା ବେଳକୁ ଗଞ୍ଜାମର ଚାଷୀମାନେ ମୁସ୍ତାଦର ପ୍ରଥା ଉଚ୍ଛେଦ, ଚାଷୀଙ୍କୁ ଜମିର ସତ୍ତ୍ୱାଧିକାର, ଜମିର ଫସଲର ଭାଗ ନେବା ପରିବର୍ତ୍ତେ ଖଜଣା ଧାର୍ଯ୍ୟ ଲାଗି ଆନ୍ଦୋଳନ ରୂପ ନେଉଥିଲା । ୧୯୪୩ ସାଲରେ ଗଞ୍ଜାମ କୃଷକ ସଂଘ ଓ କମ୍ୟୁନିଷ୍ଟ ପାର୍ଟିର ନେତୃତ୍ୱରେ ଭଗବତୀ ଚରଣ ପାଣିଗ୍ରାହିଙ୍କ ଅଧକ୍ଷତାରେ ଶେରଗଡ଼ାଠାରେ ରୟତ ସମ୍ମିଳନୀ ହେଲା । ୧୯୪୫ରେ ଆସିକା, ୧୯୪୬ରେ ତାକରଡ଼ା, ୧୯୪୭ରେ ବ୍ରହ୍ମପୁର ଠାରେ ଚାଷୀ ଓ କ୍ଷେତମଜଦୁରମାନଙ୍କ ସମାବେଶ ହେଲା । ମୁସ୍ତାଦାର ପ୍ରଥା ଉଚ୍ଛେଦ ଦେଲା, ଇନାମଦାର ବ୍ୟବସ୍ଥା ଉଠିଲା । ଭାଗଚାଷୀଙ୍କୁ ସ୍ୱାର୍ଥ ସୁରକ୍ଷା ପାଇଁ ଆଇନ ହେଲା । ଏଥିଲା ଚାଷୀ ଅନ୍ଦୋଳନର ପ୍ରଭାବ । ତେବେ ଚାଷୀ ଅନ୍ଦୋଳନକୁ ଦମନ କରିବା ଲାଗି ୧୯୪୮ ମଇ ୨୪ ତାରିଖରେ ମହତାବ ସରକାର ଗୁଳି ଚଳାଇଲା । ଏଥିରେ ଚାଷୀମାନେ ବିଚଳିତ ନହୋଇ ଆନ୍ଦୋଳନକୁ ଜୋରଦାର କଲେ । । ନେତାମାନେ ଅଜ୍ଞାତବାସରେ ରହିଲେ । ନେତାମାନଙ୍କ ଯୋଗସୂତ୍ର ରକ୍ଷାକରି ଗାଷୀ ଆନ୍ଦୋଳନକୁ ତେଜିୟାନ କରିବା ଲାଗି ବିଶ୍ୱନାଥ ସାହୁ କାର୍ଯ୍ୟ କରୁଥିବା ବେଳେ ବିଶ୍ୱନାଥ ସାହୁ ୧୯୪୯ ମସିହାରେ ପୋଲସ୍ ଦ୍ୱାରା ଗିରଫ ହେଲେ ଏବଂ ୧୯୫୨ ମସିହା ସାଧରଣ ନିର୍ବାଚନ ଘୋଷଣା ହେବା ପର୍ଯ୍ୟନ୍ତ ବ୍ରହ୍ମପୁର ମଣ୍ଡଳ କରାଗାରରେ ବନ୍ଦୀ ରହିଲେ । ,ଏହି ତିନିବର୍ଷ ସହିତ ତାଙ୍କର ରାଜନୈତିକ ଜୀବନରେ ୭ ବର୍ଷ ୪ ମାସ ବନ୍ଦୀ ରହିଥିବା ଜଣାଯାଏ । ସେ ୧୯୫୮ ସାଲରେ ଗଞ୍ଜାମ ଜିଲ୍ଲା ପରିଷଦ ଭାରତୀୟ କମ୍ୟୁନିଷ୍ଟ ଦଳର ସମ୍ପାଦକ ହେଲେ ଏବଂ ଏହି ପଦବୀରେ ବିଭିନ୍ନ ସମୟରେ ୨୧ ବର୍ଷକାଳ କାର୍ଯ୍ୟ କରିଥିଲେ ଏବଂ ଏହି ସମୟରେ ପାର୍ଟିର ସଂଗଠନ ଗଢିବାପାଇଁ ସେ ଜିଲ୍ଲାର ଏପରି କୌଣସି ଗ୍ରାମ ନାହିଁ ଯେଉଁଠାକୁ ସେ ଯାଇନାହାନ୍ତି । ସେତେବେଳେ ଜିଲ୍ଲାର ପାର୍ଟି ନେତୃମଣ୍ଡଳୀ ଗାଁ ଗାଁରେ ଚାଷୀଙ୍କୁ ଭେଟି, ସେମାନଙ୍କ

ସମସ୍ୟା ବୁଝି ସୁଖ ଦୁଃଖରେ ଭାଗୀଦାର ହେଉଥିଲେ । ପାର୍ଟି ଶାଖାର କାର୍ଯ୍ୟ ଓ ସ୍ଥାନୀୟ ପରିସ୍ଥିତି ସହ ପରିଚିତ ହେଉଥିଲେ । ଏପରି ଭାବେ କମ୍ୟୁନିଷ୍ଟ ଦଳ ସାଧାରଣ ଲୋକଙ୍କ ନିଜର ହୋଇପାରିଥିଲେ ।

୧୯୭୭ ଓ ୧୯୮୦ ମସିହାରେ ଛତ୍ରପୁର ବିଧାନସଭା ମଣ୍ଡଳୀରୁ କମ୍ୟୁନିଷ୍ଟ ଦଳର ପାର୍ଥୀ ଭାବେ ଓଡ଼ିଶା ବିଧାନସଭାକୁ ନିର୍ବାଚିତ ହିସାବ କମିଶନଙ୍କ ନିକଟରେ ଦାଖଲ କଲା ବେଳେ ହିସାବ ଫର୍ଦ୍ଦ ଦେଖି ଜଣେ ପଦସ୍ଥ ଅଧିକାରୀ କହିଥିଲେ, ଆପଣ ଏତିକି ଟଙ୍କା ଖର୍ଚ୍ଚ କରି କିପରି ନିର୍ବାଚନ ଜିଣିଲେ ? ଆପଣ ଦେଇଥିବା ନିର୍ବାଚନ ଖର୍ଚ୍ଚକୁ ଟିକିଏ ବଢାଇଦେଇ କିଛି ଅଧିକା ବ୍ୟୟ କରିଥିବା ହିସାବ ଦେଖାନ୍ତୁ । ଏହାର ଉତ୍ତରରେ ବିଶ୍ୱନାଥ ସାହୁ ନିର୍ବାଚନ ଖର୍ଚ୍ଚ ହିସାବରେ ୧୪ ହଜାର କେତେଶହ ଟଙ୍କାର ବ୍ୟୟ ଦର୍ଶାଇଥିଲେ । ଏହାର ଉତ୍ତରରେ ସେ ଉକ୍ତ ଅଧିକାରୀଙ୍କୁ କହିଥିଲେ ଯେ ମୁଁ ଯେତିକି ଖର୍ଚ୍ଚ କରିଛି । ତା'ର ସଠିକ୍ ହିସାବ ଦେଇଛି । ତାହାକୁ ବଦଳାଇବାର ନାହିଁ । ଏହି ଅର୍ଥ ମଧ୍ୟ ଗାଁର ଲୋକମାନେ ଦେଇଛନ୍ତି । ଖର୍ଚ୍ଚ ହେବାପରେ ଯେଉଁ ଅର୍ଥ ବଳିଛି ତାହାକୁ ମୁଁ ପାର୍ଟିର ପାଣ୍ଠିକୁ ଦେଇ ଦେଇଛି । ଛତ୍ରପୁର ନିର୍ବାଚନ ମଣ୍ଡଳୀର ଲୋକମାନେ ମତେ ଅତି ନିକଟରୁ ଜାଣନ୍ତି । ମୁଁ ମଧ୍ୟ ସେମାନଙ୍କୁ ଜାଣେ । ସେମାନଙ୍କ ନାମ ତ ଗାଁର ନାମ ମଧ୍ୟ ମୁଁ କହି ପାରିବି ନିର୍ବାଚନ ମଣ୍ଡଳୀର କୋଉଁ ଗାଁ କୋଉଁଠାରେ ଅବସ୍ଥିତ ତାହା ମଧ୍ୟ ଏଠାରେ ଥାଇ କହିଦେଇପାରେ । ଭୋଟ ପାଇଁ ମୋର ଟଙ୍କା କ'ଣ ଆବଶ୍ୟକ । ଲୋକେ ମୋର ଭୋଟର । ସେମାନେ ନିଜ ହାତପାଣ୍ଠିର ଅର୍ଥ ଦେଇଛନ୍ତି ଓ ଭୋଟ ଦେଇଛନ୍ତି । ଯାହାର ଲୋକଙ୍କ ସହ ସମ୍ପର୍କ ନଥିବ, ଗାଁ ସହିତ ପରିଚୟ ନଥିବ, ସେମାନେ ଅର୍ଥବଳ ଉପରେ ନିର୍ବାଚନ ଜିଣିବାକୁ ଆଶା କରନ୍ତି । ଛତ୍ରପୁର ନିର୍ବାଚନ ମଣ୍ଡଳୀର ଭୋଟରମାନେ ଭାଗଚାଷୀ ଯେଉଁମାନେ ଆଜି କମ୍ୟୁନିଷ୍ଟ ପାର୍ଟିପାଇଁ ଜମିର ହକ୍କ ପାଇଛନ୍ତି । ଇମାନଦାରଙ୍କ ଦ୍ୱାରା ଶୋଷିତ ହେଉଥିଲେ । ସେମାନେ ଏହି ପାର୍ଟି ଲାଗି ଜମିର ମାଲିକ । ଅଧିକାରୀ ଜଣଙ୍କ ବିଶ୍ୱନାଥ ସାହୁଙ୍କ କହିବାକୁ ବିଶ୍ୱାସ କରିପାରୁନଥିଲେ ଯେ ଜଣେ ପାର୍ଥୀ ଏତେ କମ୍ ଅର୍ଥ ବ୍ୟୟ କରି ନିର୍ବାଚନ ଜିଣିପାରେ ।

ବିଶ୍ୱନାଥ ସାହୁଙ୍କ ଏହା ଏକ ଗୁଣଥିଲା ଯେ ସେ କାହାରି ବଗୁଦ୍ଧରେ କୁହାଯାଉଥିବା କୁତ୍ସା ସହିତ ତାଳଦେଇ କିଛି କରୁନଥିଲେ । ଶୁଣୁନଥିଲେ । ସେଠାରୁ ଘୁଞ୍ଚି ଯାଉଥିଲେ ବା ହସି ଦେଉଥିଲେ । ଅନ୍ୟର ବ୍ୟକ୍ତିଗତ କୁତ୍ସା ଶୁଣିବା ଓ ବାହାପିଆଙ୍କ କଥା ଶୁଣିବାପାଇଁ ସମସ୍ତେ ପ୍ରାୟ ଆଗ୍ରହୀ । ଏହି ବ୍ୟତୀକ୍ରମ ଦଳ ମଧ୍ୟରେ ଗୋଷ୍ଠୀ ଗଠନକୁ ନିରୁତ୍ସାହିତ କରୁଥିଲା । କିନ୍ତୁ ପାର୍ଟି ସଂଗଠନ ମଧ୍ୟରେ ସମାଲୋଚନା, ଆତ୍ମ ସମାଲୋଚନାକୁ, ଯେତେ କଠୋର ହେଲେ ମଧ୍ୟ, ତାହାକୁ ସେ ଗ୍ରହଣ କରୁଥିଲେ । ତାଙ୍କର ଦୀର୍ଘ ରାଜନୈତିକ ଜୀବନ ମଧ୍ୟରେ ବହୁ ଘାତ-ପ୍ରତିଘାତର ସମ୍ମୁଖୀନ ହୋଇଛନ୍ତି । ଘଟଣାରେ ବିଚଳିତ, ବିବ୍ରତ, ହୋଇଛନ୍ତି । କିନ୍ତୁ କେବେ ଦଳର ନୀତି, ଆଦର୍ଶ, କାର୍ଯ୍ୟକ୍ରମକୁ ବିଚ୍ୟୁତ ହୋଇ ନାହାନ୍ତି, ବହୁ ପ୍ରଲୋଭନ ଓ ଉଚ୍ଚ ପଦବୀର ପ୍ରସ୍ତାବ ତାଙ୍କୁ ଦିଆଯାଇଛି । ଅଥଚ ସେ ଭାରତୀୟ କମ୍ୟୁନିଷ୍ଟ ଦଳ ତ୍ୟାଗ କରିନାହାନ୍ତି । ଆଦର୍ଶ ଚ୍ୟୁତ

ହୋଇନାହାନ୍ତି । ଦଳବଦଳ କରିନାହାଁନ୍ତି, ଶେଷ ଜୀବନ ପର୍ଯ୍ୟନ୍ତ ସମସ୍ତ ସମୟ ଓ ଶକ୍ତି ଦେଇ ଦଳର କାର୍ଯ୍ୟକ୍ରମରେ ଭାଗ ନେଇଛନ୍ତି ।

ସେ କେବେ ପରିବାରର କୌଣସି ସଦସ୍ୟ ବା ପାର୍ଟି କର୍ମୀଙ୍କ ବୁରଢରେ କୁତ୍ସା ରଚନା କରି ନାହାଁନ୍ତି । କାହାକୁ ଘୃଣା କରିନାହାଁନ୍ତି । ହସ ହସ ମୁହଁରେ ସମସ୍ତଙ୍କୁ ଆପଣେଇ ନେବାର ପ୍ରଚେଷ୍ଟା କରିଛନ୍ତି । ୭୫ ବର୍ଷ ବୟସରେ ତାଙ୍କର ଜନ୍ମଦିନ ପାଳନ ପାଇଁ ବନ୍ଧୁ, ଶୁଭେଚ୍ଛୁମାନେ ପ୍ରସ୍ତାବ ଦେଇଛନ୍ତି । ହସି ହସି ତାହାକୁ ସେ ଏଡ଼ାଇ ଦେଇଛନ୍ତି । ପ୍ରତିବର୍ଷ ଜନ୍ମଦିନ ପାଳନ ପାଇଁ ପ୍ରସ୍ତାବ ଆସେ, କିନ୍ତୁ ସେ ଏଥିପାଇଁ ଏକମତ ହୋଇନାହାଁନ୍ତି । ବ୍ୟକ୍ତି ପ୍ରତିଭାକୁ ସେ କେବେ ଉତ୍ସାହିତ କରିନାହାଁନ୍ତି ।

ବିଶ୍ୱନାଥ ସାହୁ ବିଧାୟକ ଥିବା ବେଳେ, ପାର୍ଟିର କାର୍ଯ୍ୟକାରୀ ଥିବା ବେଳେ ବା ଜଣେ କମ୍ୟୁନିଷ୍ଟ କର୍ମୀଭାବେ ଲୋକଙ୍କ ସମସ୍ୟାକୁ ନେଇ ସଂପୃକ୍ତ ଅଧିକାରୀଙ୍କଠାରେ ଉପସ୍ଥାପିତ କରିଛନ୍ତି । ପକ୍ଷଙ୍କୁ ସାଥିରେ ନେଇ ଆଲୋଚନା କରିଛନ୍ତି । ପରବର୍ତ୍ତୀ ସମୟରେ ତ'ର ସଫଳତା ନେଇ ପଚାରିବୁଝିଛନ୍ତି ଏବଂ ଚିଠି ଖଣ୍ଡିଏ ଲେଖି ପକ୍ଷଙ୍କୁ ଜଣାଇଛନ୍ତି । ଯିଏ ଚିଠି ଖଣ୍ଡିଏ ଲେଖିଛି, ତା'ର ଉତ୍ତର ଚିଠିଟିଏ ପାଇଛନ୍ତି ଯେଉଁ ଅନୁରୋଧ କରାଯାଇଥାଏ ତାହାକୁ ଅଗ୍ରାଧିକାର ଦେଇ କାର୍ଯ୍ୟକାରୀ କରିବା ଲାଗି ଉଦ୍ୟମ କରିଛନ୍ତି ପରବର୍ତ୍ତୀ ସମୟରେ ଚିଠି ଟିଏ ପକ୍ଷ ପାଇଛି ।

ବିଶ୍ୱନାଥ ସାହୁ ଦଳପାଇଁ ପାଣ୍ଠି ସଂଗ୍ରହ କରିଛନ୍ତି । ଶିକ୍ଷାନୁଷ୍ଠାନ ଓ ସଂସ୍କୃତିକ ଅନୁଷ୍ଠାନ ଓ କାର୍ଯ୍ୟକ୍ରମ ପାଇଁ ପାଣ୍ଠି ସଂଗ୍ରହ କରିଛନ୍ତି । କିନ୍ତୁ ଦଳନାମରେ ନିଜ ପାଇଁ କେଉଁଠାରୁ ଅର୍ଥ ନେଇଥିବା ଶତ୍ରୁପକ୍ଷ କେବେ ମଧ୍ୟ କହିପାରିବେନାହିଁ ।

ଗଞ୍ଜାମ ଜିଲ୍ଲା କମ୍ୟୁନିଷ୍ଟ ପାର୍ଟି ଓଡ଼ିଶା ରାଜ୍ୟର କମ୍ୟୁନିଷ୍ଟ ଦୁର୍ଗଭାବେ ପରିଗଣିତ ହୋଇଆସିଛି । ଏଠାରୁ ସଂଖ୍ୟାଧିକ ବିଧାୟକ ବିଧାନସଭାକୁ ନିର୍ବାଚିତ ହୋଇଛନ୍ତି । ଲୋକସଭା ଓ ରାଜ୍ୟସଭାକୁ ନିର୍ବାଚିତ ହୋଇଛନ୍ତି । ଚାଷୀମାନଙ୍କ ଅକୁଣ୍ଠ ସମର୍ଥନ ଯୋଗୁଁ କମ୍ୟୁନିଷ୍ଟ ଦଳର ଏହି ସୁନାମ ପ୍ରତିଷ୍ଠିତ ହୋଇପାରିଛି । ଗତ ୨୦୧୬ ମାର୍ଚ୍ଚ ୧୮ ତାରିଖରେ ଚାଷୀ ନେତା, କମ୍ୟୁନିଷ୍ଟ ସଂଗ୍ରାମୀ ବିଶ୍ୱନାଥ ସାହୁଙ୍କ ଦେହାନ୍ତ ୯୧ ବର୍ଷରେ ତାଙ୍କ ବଡକୁଶସ୍ଥଳୀ ବାସଭବନରେ ହୋଇଗଲା । ତାଙ୍କ ପ୍ରତି ଶ୍ରଦ୍ଧାଞ୍ଜଳି ଜଣାଉଛି ।

କୋରାପୁଟ ଜିଲ୍ଲା ସହ ବିଶ୍ୱନାଥ ବାବୁଙ୍କ ଅନ୍ତରଙ୍ଗ ସମ୍ପର୍କ

# ମେହେନତି ମଣିଷର ଶତ ସଂଗ୍ରାମର ନାୟକ ଜନନେତା କମ୍ରେଡ଼ ବିଶ୍ୱନାଥ ସାହୁ ଅମର ରହେ ।

**କ୍ଷୀରୋଦ ସିଂହଦେଓ**

ଭାରତର ସାଧନତା ପୂର୍ବ ଚାଳିଶ ଦଶକରେ ସମଗ୍ର ଭାରତ ବର୍ଷକୁ ଶୋଷଣ, କଷଣରୁ ମୁକ୍ତ କରିବାପାଇଁ କ୍ରାନ୍ତିକାରି ଚେତନାରେ ଉଦ୍‌ବୃଦ୍ଧ ହୋଇ, ବୈଜ୍ଞାନିକ ସମାଜବାଦ ପ୍ରତିଷ୍ଠା ପାଇଁ ନିଜକୁ ଉତ୍ସର୍ଗ କରିଥିଲେ ଦେଶର ସେଇମାନଙ୍କ ମଧ୍ୟରେ ସଂଗ୍ରାମୀ - ବିଶ୍ୱନାଥ ସାହୁ ଜଣେ ଅନ୍ୟତମ କର୍ଣ୍ଣଧାର । ଓଡ଼ିଶାର ଅନ୍ୟତମ ପ୍ରାଣକେନ୍ଦ୍ର, ଗଞ୍ଜାମ ଜିଲ୍ଲାର ବଡ଼କୁଶସ୍ଥଳି ଗ୍ରାମରେ ୧୯୨୫ ଅକ୍ଟୋବର ୧୭ ତାରିଖରେ ବ୍ରାହ୍ମଣ ପରିବାରରେ ଜନ୍ମଗ୍ରହଣ କରିଥିବା ବିଶ୍ୱନାଥ ବାବୁ ମାତ୍ର ୧୯ ବର୍ଷ ବୟସରେ ହାଇସ୍କୁଲର ଛାତ୍ର ଥିବା ସମୟରେ ୧୯୪୪ ମସିହାରେ ଅଖିଳ ଭାରତ ଛାତ୍ର ସଂଘ (ଏ.ଆଇ.ଏସ୍.ଏଫ୍)ର ବୈପ୍ଳବୀକ ଦେଶପ୍ରେମ ଓ କ୍ରାନ୍ତିକାରି ଆହ୍ୱାନରେ ଅନୁପ୍ରାଣିତ ହୋଇ ଛାତ୍ର ସଂଘରେ ଯୋଗ ଦିଅନ୍ତି ଓ ସଂଘର ଡ଼ାକରାରେ ଆସ୍କାରୁ କଟକ ଦୀର୍ଘ ପଦଯାତ୍ରା ତାଙ୍କ ସଂଗ୍ରାମ ତାଙ୍କ ଜୀବନ ପଥକୁ ଦୀର୍ଘାୟୁ କରିବାରେ ପ୍ରଥମ ପ୍ରେରଣା ପ୍ରଦାନ କରେ । ଛାତ୍ର ଜୀବନରେ ତାଙ୍କର ନିର୍ଭିକତା ଓ କର୍ତ୍ତବ୍ୟ ପରାୟଣତା ସୁନାମଧନ୍ୟ ଖଲିକୋଟ କଲେଜରେ ଅଧ୍ୟୟନ ସମୟରେ ଗଞ୍ଜାମ ଜିଲ୍ଲା ଏ.ଆଇ.ଏସ୍.ଏଫର ପ୍ରଥମେ ଯୁଗ୍ମ ସମ୍ପାଦକ ଓ ପରିବର୍ତ୍ତୀ ସମୟରେ ସମ୍ପାଦକ ପଦବୀ ଅଳଙ୍କୃତ କରି ସମଗ୍ର ରାଜ୍ୟରେ ଛାତ୍ର ଆନ୍ଦୋଳନର ନେତୃତ୍ୱ ନେବାରେ ପରିଚୟ ସୃଷ୍ଟି କରନ୍ତି । ତାଙ୍କର କାର୍ଯ୍ୟଦକ୍ଷତା, ସାଂଗଠନିକ ନିପୁଣତା ଓ କମ୍ୟୁନିଷ୍ଟ ଚିନ୍ତାଧାରାପ୍ରତି ଅନୁଗତ୍ୟତାକୁ ବିଶ୍ଳେଷଣ କରି ତତ୍‌କାଳୀନ ଗଞ୍ଜାମ ଜିଲ୍ଲା କମ୍ୟୁନିଷ୍ଟ ପାର୍ଟି ୧୯୪୮ରେ ତାଙ୍କର ସଭ୍ୟପଦ ଗ୍ରହଣ କରିବା ସହ, ସେତେବେଳେ କମ୍ୟୁନିଷ୍ଟ ପାର୍ଟି ବେଆଇନ ଘୋଷଣା ହୋଇଥିବା ସତ୍ତ୍ୱେ, ଐତିହାସିକ ରୟତ ଆନ୍ଦୋଳନରେ କମ୍ରେଡ଼ ବିଶ୍ୱନାଥ ବାବୁ ଅଂଶଗ୍ରହଣ କରିବା ସହିତ ପାର୍ଟିର ଗୁପ୍ତଅଡ଼ର ନେବା ଆଣିବାରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ସମ୍ପାଦନ କରୁଥିଲେ । ମାତ୍ର ଅନେକ ସତର୍କତା ସତ୍ୱ ୧୯୪୯ରେ ପୋଲିସ ହାତରେ ଧରାପଡ଼ି ପ୍ରଥମ ଥର ପାଇଁ ଜେଲ ଜୀବନ ଶୁଭାରମ୍ଭ କରି ୧୯୫୨ ମସିହା ପର୍ଯ୍ୟନ୍ତ ତିନିବର୍ଷ କାଳ ଜେଲ ଭିତରେ ରହିଥିଲେ । ୧୯୫୨ ରେ କମ୍ୟୁନିଷ୍ଟ ପାର୍ଟି ଆଇନ ସମ୍ମତ ହେବାପରେ କମ୍ରେଡ଼ ବିଶ୍ୱନାଥ ସାହୁ ୧୯୫୮ ମସିହାରେ ତତ୍‌କାଳୀନ ଗଞ୍ଜାମ ଜିଲ୍ଲା କମ୍ୟୁନିଷ୍ଟ ପାର୍ଟିର ଜିଲା ସଂପାଦକ ଭଳି ଗୁରୁତ୍ୱପର୍ଣ୍ଣ ପଦବୀ ଅଳଙ୍କୃତ କରି ଦୀର୍ଘ ୨୧ ବର୍ଷ ଧରି ଏଇପଦବୀରେ ରହି ଜିଲ୍ଲାପାର୍ଟିକୁ ଲୋକାଭିମୁଖି କରାଇବାରେ ଗୁରୁତ୍ୱପୂର୍ଣ୍ଣ ଭୂମିକା

ଗ୍ରହଣ କରିଥିଲେ । ୧୯୭୭ ଓ ୧୯୮୦ ମସିହାରେ ଛତ୍ରପୁର ନିର୍ବାଚନ ମଣ୍ଡଳୀରୁ ଦୁଇଥର ଓଡ଼ିଶ ବିଧାନସଭାକୁ ନିର୍ବାଚିତ ହୋଇଥିବା ସାଥୀ - ବିଶ୍ୱନାଥ ବାବୁ ତାଙ୍କ ନିର୍ବାଚନ ମଣ୍ଡଳୀ ସମେତ ସମଗ୍ର ଓଡ଼ିଶାର ଜନଗଣଙ୍କ ଜିବନ, ବିକାଶର ସମସ୍ୟାକୁ ବିଧାନ ସଭା ଗୃହ ମଧରେ ଓ ଗୃହବାହାରେ ଉପସ୍ଥାପିତ କରିବାରେ ଅଗ୍ରଣୀ ଭୂମିକା ନିର୍ବାହ କରିବା ସହ, ସମସ୍ୟା ଗୁଡ଼ିକର ସମାଧାନ ନିମନ୍ତେ ତାଙ୍କର ବିଚକ୍ଷଣତା ଅନ୍ୟମାନଙ୍କ ପାଇଁ ଅନୁକରଣୀୟ ଅଟେ ।

କମ୍ୟୁନିଷ୍ଟ ପାର୍ଟି ଓ ଗଣସଂଗଠନର ଗୁରୁତ୍ୱ ଦୃଷ୍ଟିରୁ ଯେଉଁ ପ୍ରମୁଖ ଗଣଭିତ୍ତି ଫଳରେ ଦେଶରେ ତଥା ରାଜ୍ୟରେ ଆମେ ବୈପ୍ଳବିକ ଚେତନା ସୃଷ୍ଟି କରିବାରେ ଅଗ୍ରଣୀ ଭୂମିକା ଗ୍ରହଣ କରି ଆସିଅଛୁ, ସେଇ ଗଣ ସଂଗଠନ ମଧରେ ଅଖିଳ ଭାରତ ଛାତ୍ରସଂଘ ଓ ଅଖିଳଭାରତ କୃଷକ ସଭା (ତତ୍‌କାଳୀନ ଉତ୍କଳ ରାଜ୍ୟ କୃଷକ ସଭା) ଜରିଆରେ ସାଥୀ ବିଶ୍ୱନାଥ ସାହୁ ସମଗ୍ର ରାଜ୍ୟରେ ତଥା ଜାତୀୟ ସ୍ତରରେ ତାଙ୍କର ଦୃଢ ନେତୃତ୍ୱ ଓ ସାଂଗଠନିକ ଦକ୍ଷତା ପ୍ରତିପାଦିତ କରି ପାରିଥିଲେ । ବିଶେଷ କରି ସତୁରୀ ଦଶକରେ ଭୂ-ସଂସ୍କାର, ଲଙ୍ଗଳଜାର ଜମିଦାର, ବଡ଼ ବଡ଼ ଜମି ମାଲିକଙ୍କ ଉଦ୍‌ବୃତ ଜମିକୁ ଗରିବ ଖଟିଖିଆ ଲୋକଙ୍କୁ ଦଖଲ ଦେଇ ତାଙ୍କ ଅଧିକାର କୁ ସାବ୍ୟସ୍ତ କରିବା, ଜଳକର ବଢାଇବା, ଧାନଚାଷିଙ୍କ ଉପରେ ସରକାରୀ ଲେଭି ର ପ୍ରତିବାଦ ଆନ୍ଦୋଳନ ସହ, ଆଖୁଚାଷିଙ୍କ ଜୀବନ ଜିବିକା ର ସୁରକ୍ଷା ନଡ଼ିଆ ଗାଷିଙ୍କ ସମସ୍ୟାର ସମାଧାନ ସହିତ, ମରୁଡ଼ି, ଦୁର୍ବିପାକ, ସମୟରେ କୃଷକଙ୍କ ନେତୃତ୍ୱ ନେଇ ସରକାର, ପ୍ରଶାସନ ସମ୍ମୁଖରେ ପ୍ରତ୍ୟକ୍ଷ ବୀବରଣୀ ପ୍ରଦାନ ସହ ଅକାଟ୍ୟ ଯୁକ୍ତି ଫଳରେ ଓଡ଼ିଶାର ଅଗଣିତ କୃଷକ ପରିବାରଙ୍କ ଆସ୍ଥାଭାଜନ ହୋଇପାରିଥିଲେ । ସାଥୀ ବିଶ୍ୱାନଥ ସାହୁଙ୍କ ଆଉ ଏକ ବିଶେଷତ୍ୱ ଥିଲା ପଛୁଆ ଓ ଗରିବ, ଅସଚେତନ ଜିଲ୍ଲା ଓ ଆଞ୍ଚଳମାନଙ୍କରେ ଲୋକଙ୍କ ସହ ଓ ତାଙ୍କ ସମାସ୍ୟା ସମ୍ପର୍କରେ ଅତ୍ୟନ୍ତ ନିଷ୍କପଟରେ ତଥ୍ୟ ହାସଲ କରିବାରେ ସିଦ୍ଧହସ୍ତ ଥିଲେ ଯାହା ଫଳରେ ତାଙ୍କର କର୍ମଭୂମି ସମେତ ରାଜ୍ୟର ସମସ୍ତ ଅଞ୍ଚଳରେ ତାଙ୍କ ପ୍ରତି ବିଶ୍ୱାସ ଓ ସମ୍ମାନ ପରିଲିକ୍ଷିତ ହେଉଥିଲା । ବାସ୍ତବରେ ତାଙ୍କ ପାଖରେ ଥିବା ମୁରବୀତ୍ୱ ଗୁଣ ସବୁ ସମୟରେ ସଂଗଠନ କୁ ଦିଗ୍‌ଦର୍ଶନ ଦେବାରେ ସହାୟକ ହେଉଥିଲା । ଦୀର୍ଘ ଦିନ ଧରି କୃଷକ ସଭାକୁ ନେତୃତ୍ୱ ଦେଇ ଆସିଥିବା ଓ ରାଜ୍ୟ ସଭାପତି, ଜାତୀୟ ପରିଷଦରେ ରହି ସମଗ୍ର ଦେଶର କୃଷି, କୃଷକ ସମସ୍ୟା ଉପରେ ତାଙ୍କର ଦୁରଦୃଷ୍ଟି, ଅଖିଳ ଭାରତ କୃଷକ ସଭାକୁ ପ୍ରେରଣା ଦେବା ସହ ଦେଶରେ ଦଳ,ମତ, ଜାତି, ଧର୍ମ ନିର୍ବିଶେଷରେ କୃଷକ ଏକତା କ୍ଷେତ୍ରରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ନେଉଥିଲେ ।

କମ୍ରେଡ଼ ବିଶ୍ୱନାଥ ସାହୁଙ୍କ ଦେହାନ୍ତ ଆମ ସମସ୍ତଙ୍କ ପାଇଁ ଅପୂରଣୀୟ କ୍ଷତି ଆଣିଦେଇଥିବା ବେଳେ, ଅଖିଳ ଭାରତ କୃଷକ ସଭା ଓଡ଼ିଶା ରାଜ୍ୟ ପରିଷଦ, ତାର ମୁରବୀକୁ ହରେଇଛି । ତାଙ୍କ

ଅବର୍ତ୍ତମାନରେ ସେ ଛାଡ଼ି ଯାଇଥିବା ନିରଳତା ନିଷ୍କପଟତା, ଅତ୍ୟନ୍ତ ସରଳ ଜୀବନ ଯାପନ କରି ସାମାଜିକ ଦକ୍ଷତା ଓ ଆମ୍ଭେମାନେ ବିଶ୍ୱାସ ରଖୁଥିବା ଶୋଷଣ, କଷଣ ବିହିନ ସମାଜ ପ୍ରତିଷ୍ଠାର ମୂଳମନ୍ତ୍ର ଓ ଅନ୍ୟମାନଙ୍କୁ ଅନୁପ୍ରାଣିତ କରିପାରିବ କମ୍ୟୁନିଷ୍ଟ (ସମାଜବାଦ) ଆଦର୍ଶ ଗୁଡ଼ିକ ଥରେ ଅନୁସରଣ ଓ ଅନୁକରଣ କଲେ ବିଶ୍ୱନାଥ ସାହୁଙ୍କ ପ୍ରତି ଶ୍ରେଷ୍ଠ ଶ୍ରଦ୍ଧାଞ୍ଜଳି ଅର୍ପଣ ହେବ । ଏହି ପରିପ୍ରେକ୍ଷୀରେ ଓଡ଼ିଶାର ଅଗଣିତ କୃଷକ ସଭ୍ୟ / ସଭ୍ୟା, କର୍ମକର୍ତ୍ତାଙ୍କ ସହ ମୁଁ ରାଜ୍ୟ ଅଖିଳ ଭାରତ କୃଷକ ସଭା ପକ୍ଷରୁ କମ୍ରେଡ଼ ବିଶ୍ୱନାଥ ସାହୁଙ୍କ ଅମ୍ଳାନ ସ୍ମୃତି ପ୍ରତି ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରିବା ସହ ତାଙ୍କର ଅଧୁରା ସ୍ୱପ୍ନକୁ ସାକାର କରିବା ପାଇଁ ଅଙ୍ଗୀକାର ବଦ୍ଧତା ପ୍ରକାଶ କରୁଛି । କମ୍ରେଡ଼ ବିଶ୍ୱନାଥ ସାହୁ ଅମର ରହେ !

# ସ୍ମୃତି ଏକ ଅମ୍ଳାନ ପ୍ରତିଭାର

ଶ୍ରୀମତୀ ପ୍ରମୋଦିନୀ ପାଇକରାୟ

ମୁଁ କମ୍ୟୁନିଷ୍ଟ ପାର୍ଟିରେ ସଭ୍ୟା ହେବା ଆଗରୁ ତାଙ୍କୁ ମୋର ପରିବାର ମଧରେ ବହୁବାର ଦେଖୁଛି, ମୋ ଶ୍ୱଶୁର ଲେଟ୍ ଗଙ୍ଗାଧର ପାଇକରାୟଙ୍କ ସହିତ ଓଡ଼ିଶାର କୃଷକ ମାନଙ୍କର ଆର୍ଥୀକ ଅଭିବୃଦ୍ଧି, କୃଷିନୀତିର ସଂସ୍କାର ତଥା ଆନ୍ଦୋଳନ ସମ୍ପର୍କରେ ଆଲୋଚନା କରିବା ମୁଁ ବହୁବାର ଶୁଣିଛି । ବାସ୍ତବିକ ଆମ ରାଜ୍ୟରେ କୃଷକ ଓ କୃଷିର ଯେଉଁ ଅବନତି ଘଟିଛି, ସେଥିପାଇଁ ସେ ମର୍ମାହତ ହେଉଥିଲେ । ଏପରିକି ମହିଳା ମାନଙ୍କୁ ମଧ କୃଷିକାର୍ଯ୍ୟପାଇଁ ସେ ଉତ୍ସାହୀତ କରୁଥିଲେ ।

ଥରେ ପୁରୀରେ ହେଉଥିବା ନଡ଼ିଆ ଚାଷ ସମ୍ମିଳନୀକୁ ମୋତେ ଓ ଅପାଙ୍କୁ ଯୋର୍ କରି ନେଇଗଲେ । କହିଲେ ଚାଷୀ ଘରର ଝିଅ, ଚାଷୀ ଘରର ବୋହୂ ହୋଇ ଯିବ ନାହିଁ ?

ମୋତେ ତାଙ୍କର ଝିଅପରି ଭଲ ପାଉଥିଲେ, ମୁଁ ପରା, ଯେପରି ରାନ୍ଧିଲେ ପ୍ରସଂଶା କରନ୍ତି । ସେ ଦିନ 'ରଘୁନାଥ ପୁରରେ' କୃଷକ ସମ୍ମାଳନି ହେଉଥାଏ, ମୋତେ କହିଲେ "ରାତିରେ 'ଅତୁଲ ରଞ୍ଜନ' ଓ ମୁଁ ଖାଇବୁ, ଡରି ଡରି ରୋଷେଇ କଲି । ମାତ୍ର ବହୁତ ଖୁସି ହୋଇ ମୋତେ ଆଶୀର୍ବାଦ କଲେ । ସେଦିନ ମୋତେ ଏତେ ଖୁସି ଲାଗିଲା ତାହା ମନେ ପଡ଼ିଲେ, କାନ୍ଦ ଲାଗୁଛି ।

ଦୁଇଥର ବିଧାୟକ ଭାବେ ନିର୍ବାଚିତ ହେବା ସହିତ କମୁଁନିଷ୍ଟ ପାର୍ଟିର ବିଶିଷ୍ଟ ଭୂମୀକାରେ ତାଙ୍କର ଜୀବନ କଟିଛି । ଶେଷ ନିଶ୍ୱାସତ୍ୟାଗ କଲା ସମୟରେ ମଧ ସେ କଣ୍ଟ୍ରୋଲ କମିଶନର ଚେୟାରମ୍ୟାନ ଥିଲେ । ତାଙ୍କର ମୃତ୍ୟୁର ଆମ ପାର୍ଟିର ଅପୂରଣୀୟ କ୍ଷତି ହୋଇଛି, ଶେଷରେ ତାଙ୍କର ଅମର-ଅମ୍ଳାନ-ପ୍ରତିଭାପ୍ରତି, ଉତ୍କଳ ମହିଳା ସମତି ତରଫରୁ ଶ୍ରଦ୍ଧାଞ୍ଜଳୀ ଜଣାଉଛି ।

। ଇତି ।

ସଭାନେତ୍ରୀ ରାଜ୍ୟ ଉତ୍କଳ ମହିଳା ସଂଘ

# କିଛି ସ୍ମୃତି, କିଛି ଅନୁଭୂତି

**ବନଲତା ଜେନା**

ମାର୍ଚ୍ଚ ୧୮ ତାରିଖକୁ ବିଦାୟ ଦେଇ ୧୯ ତାରିଖ ଭୋର ପାଞ୍ଚଟା ଆସିବ ଆସିବ ହେଉ ଥାଏ । ସେତିକି ବେଳେ ନାରଣ ଡ଼ାଂଗୁଆର ମୋବାଇଲ୍ ମେସେଜ ଓ ପ୍ରମୋଦିନୀର ଫୋନ୍ କଃ ବିଶ୍ୱନାଥ ସାହୁ ଆଉ ନାହାଁନ୍ତି । ତାଙ୍କୁ ଭଗବତୀ ଭବନକୁ ଅଣାଯାଉଛି । ଗତ ଦୁଇ ଦିନ ଧରି ନାତିର ବ୍ରତଘରରେ ବ୍ୟସ୍ତରହି ବହୁତ କ୍ଲାନ୍ତ ହୋଇ ଯାଇଥାଏ । ୧୯ ତାରିଖରେ ବାମପନ୍ଥୀ ଦଳ ମାନଙ୍କର ରାଜ୍ୟ ସ୍ତରୀୟ ରାଲି ଆଉ ସମାବେଶରେ ଯୋଗ ଦେଇ ପାରିବି ନାହିଁ ବୋଲି ମନକୁ ବୁଝାଇ ଦେଇଥିଲି । ଦେହକୁ ଟିକେ ବିଶ୍ରାମ ମିଳିଯିବ କିଛି ଦିନ ପାଇଁ । କିନ୍ତୁ କଃ ବିଶ୍ୱନାଥ ସାହୁଙ୍କର ଶେଷ ଦର୍ଶନ କରି ପାରିବି ନାହିଁ, ଏଥି ପାଇଁ ମୁଁ ନିଜକୁ କ୍ଷମା କରି ପାରିବି ନାହିଁ । ଘରେ ବଂଧୁ ବାନ୍ଧବ ପୁରିଛନ୍ତି । ଏ ଯାଏଁ କେହି ଉଠି ନାହାଁନ୍ତି । ମାତ୍ର ପନ୍ଦର ମିନିଟ୍ ମଧରେ ପ୍ରସ୍ତୁତ ହୋଇ କେନ୍ଦୁଆ ପଦା ରେଳ ଷ୍ଟେସନରେ ପହଁଞ୍ଚିଲି, ସମାବେଶରେ ଯୋଗ ଦେବାକୁ ଆସୁଥିବା ବନ୍ତ ପାର୍ଟିର ସାଥୀମାନେ ଦେଖାହେଲେ, ସେମାନେ ଜାଣିଥିଲେ ମୁଁ ଆସିବି ନାହିଁ । ମୋତେ ଦେଖି ଜଣେ ସାଥୀ କହିଲେ ଦେଇ କଣ ନ ଆସି ରହି ପାରିବ ? ମୁଁ କହିଲି ସେଥି ପାଇଁ ନୁହଁ, ବିଶ୍ୱନାଥ ବାବୁଙ୍କ ଶେଷଦର୍ଶନ ପାଇଁ ଆସିଲି ।

ମାଷ୍ଟର କ୍ୟାଣ୍ଟିନ୍ ଛକରେ ପ୍ରମୋଦିନୀ ଅପେକ୍ଷା କରିଥିଲା, ସାଙ୍ଗ ହୋଇ ଭଗବତୀ ଭବନ ଆସିଲୁ, ସେତେବେଳକୁ ଭିଡ଼୍ ନ ଥାଏ । ସାଥୀମାନେ ଷ୍ଟେସନକୁ ବାହାରି ଯାଇଥାନ୍ତି । ସାଧାରଣ ସଂପାଦକ ଡଃ ସୁଧାକର ରେଡ଼ି ଓ ଦିବାକର ଭଗବତୀ ଭବନ ଗେଟ୍ ପାଖରେ ଥାନ୍ତି, ଦିବାକର ମ୍ଳାନ ଓ ରୋଗୀଣା ଭଳି ଛିଡ଼ା ହୋଇଥାଏ । ଯେମିତି ପରିବାରର କେହି ଜଣେ ନିଜ ଲୋକକୁ ସେ ହରେଇ ବସିଛି । ମୋତେ ବହୁତ ଦୁଃଖ ଲାଗିଲା, ଶେଷ ଦର୍ଶନ କଲୁ ଆଖିର ଲୁହରେ ମନର କୋହରେ ।

ପ୍ରଥମ କରି ତାଙ୍କ ସହିତ ମୋର ଦେଖା ହୋଇଥିଲା କମ୍ୟୁନିଷ୍ଟ ପାର୍ଟିର ରାଜ୍ୟ ସମ୍ମିଳନୀ ଭୁବନେଶ୍ୱରରେ । ଭଂଜ କଳା ମଣ୍ଡପରେ ସେହି ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ବିଶ୍ୱନାଥ ବାବୁ ସେତେବେଳେ ଗଂଜାମ ଜିଲ୍ଲା ସଂପାଦକ ଥାଆନ୍ତି । ୧୯୭୧ ରୁ ୨୦୧୫ । ଦୀର୍ଘ ୪୪ ବର୍ଷ ଧରି ତାଙ୍କ ସହିତ ମିଶିଛି । କଥାବାର୍ତ୍ତାରେ ମୁରବୀ ସୁଲଭ ବ୍ୟବହାର, ବଡ଼ ଭାଇ ଭଳି ଉପଦେଶ । ନେତା ଭଳି ତାଗିଦ୍, କେତେବେଳେ ଗାଳି ତ କେତେବେଳେ ଖାଇଲୁଣି କି ନାହିଁ ବୋଲି ମୃଦୁ ଶାସନ । ଏଭଳି ଅନେକ ସ୍ମୃତି ଉଙ୍କି ମାରୁଛି । ୧୯୯୨ ମସିହା ହେବ ବୋଧହୁଏ । ଭଂଜ ନଗରରେ କୃଷକ ସଭାର ରାଜ୍ୟ ସମ୍ମିଳନୀ ଅନୁଷ୍ଠିତ ହେଉଥାଏ । ମୋତେ ସେ ଡ଼ାକିଥାନ୍ତି ସେଠାକୁ ଯିବା ପାଇଁ । ମୋ ସ୍ୱାମୀ ତ୍ରୈଲୋଚନ ଜେନା ପ୍ରତିନିଧି ଭାବରେ

ନିର୍ବାଚିତ ହୋଇଥାନ୍ତି । ମୁଁ ତାଙ୍କ ସଂଗରେ ଯାଇଥିଲି । ସେଠାରେ ମୁଁ ପ୍ରତିନିଧି ହିସାବରେ ଯୋଗ ଦେଲି । କଃ ଲୋକନାଥ ଚୌଧୁରୀ ମଧ ସେହି ସମ୍ମିଳନୀକୁ ଯାଇଥାନ୍ତି । ରିପୋର୍ଟ ଉପରେ ଆଲୋଚନା ଚାଲିଥାଏ । ସଭାପତି ମଣ୍ଡଳୀ ତରଫରୁ ହଠାତ୍ ମୋ ନାଁ ଡ଼କାଗଲା । ମୁଁ ପୁରା ଘାବରେଇ ଗଲି । ମୁଁ କଣ ଜାଣିଛି ଯେ କହିବି ? ଅବଶ୍ୟ ରିପୋର୍ଟପୂର୍ବଦିନ ରାତିରେ ପଢ଼ିସାରି ଥାଏ । ଉତ୍କଳ ମହିଳା ସମିତି ସମ୍ମିଳନୀ କଟକରେ ଯୋଗ ଦେବାର ଯେଉଁ ଅଭିଜ୍ଞତା ଟିକକ ଥିଲା, ତାକୁ ହିଁ ପାଥେୟ କରି ସାଂଗଠନିକ ରିପୋର୍ଟ ଉପରେ ବୋଧ ହୁଏ ଆଠ ମିନିଟ୍ କହିଛି । ମହିଳା ମାନଙ୍କୁ କୃଷକ ସଭାକୁ ଆଣିବା ଉପରେ ମୁଁ ଗୁରୁତ୍ୱ ଦେଇ କହିଥିଲି । ତାପରେ ନୂତନ ରାଜ୍ୟ ପରିଷଦ ଗଠନ କରାଯାଇଥିଲା, ଏବଂ ମୋତେ ହିଁ ରାଜ୍ୟ ପରିଷଦରେ ନିଆଯାଇଥିଲା । କୃଷକ ସଭାର ରାଜ୍ୟ ସ୍ତରୀୟ ଧାରଣା ସମାବେଶ ହେଉ କିମ୍ବା ବିକ୍ଷୋଭ । ବିଶ୍ୱନାଥ ସାହୁ ନିଶ୍ଚିତ ଭାବରେ ମୋତେ ଯିବା ପାଇଁ ବାଧ୍ୟ କରନ୍ତି । ମହିଳା ମାନଙ୍କୁ ଉତ୍ସାହିତ କରିବା, ସାଂଗଠନିକ ଭାଗରେ ବଳିଷ୍ଠ କରାଇବା ତାଙ୍କର ଯେଉଁ ଉଦ୍ୟମ ମୁଁ ତାହା କୌଣସି ଦିନ ଭୁଲି ପାରିବି ନାହିଁ । ତାଙ୍କ ସହିତ ସାଧାରଣ ନିର୍ବାଚନରେ କାମ କରିବାର ସୁଯୋଗ ପାଇଛି ଆସିକା ଲୋକ ସଭା ନିର୍ବାଚନ ମଣ୍ଡଳୀରେ । ହିଂଜିଳୀକାଟ, ହେଉ କି, ପିତଳ, ଶେରଗଡ଼ ହେଉକି ଆସିକା, ସବୁଠି ତାଙ୍କର ପରିଚିତ ଦେଖି ଆଶ୍ଚର୍ଯ୍ୟ ହୋଇଛି । ଘରେ ଘରେ ସେ ପରିଚିତ । କେଉଁ କମ୍ରେଡ୍ଙ୍କ ବଂଧୁ ଘରର ପରିଚୟ ମଧ ତାଙ୍କର ଅଜଣା ନୁହେଁ । ସମସ୍ତଙ୍କ ସହିତ ତାଙ୍କର ସଂପର୍କ । ଗୋଟେ କଥାରେ କିନ୍ତୁ ମୁଁ ତାଙ୍କ ଉପରେ ଭାରି ଚିଡ଼ିଯାଏ । ତାହା ହେଲା ଦୀର୍ଘ ସମୟ ଚାଲିବା, ଓଃ, ଚାଲି ଚାଲି ମୁଁ ଥକି ପଡ଼େ । ଯେଉଁ ଗାଁରେ ସେ ପହଁଞ୍ଚନ୍ତି, ଗାଡ଼ି ଛାଡ଼ି ପାଦରେ ଚାଲି ଚାଲି ସବୁରି ଘରେ ପହଁଞ୍ଚନ୍ତି । ଅବିଭକ୍ତ ଗଂଜାମ ଜିଲ୍ଲାରେ ସମସ୍ତ ଅଂଚଳରେ ସେ ପରିଚିତ । ଦୁଇ ଥର ଛତ୍ରପୁର ନିର୍ବାଚନ ମଣ୍ଡଳୀରୁ ପ୍ରତିଦ୍ୱନ୍ଦୀତା କରି ବିଧାନ ସଭାକୁ ନିର୍ବାଚିତ ହୋଇଛନ୍ତି । ବିଧାନ ସଭାରେ ନିର୍ଭିକ ଭାବରେ କୃଷକ ମାନଙ୍କ ସମସ୍ୟାକୁ ଉପସ୍ଥାପନ କରିଛନ୍ତି । ବାହାରେ କୃଷକ ମାନଙ୍କୁ ଏକାଠି କରି ଲଢ଼େଇ କରିଛନ୍ତି । ତାଙ୍କ ସହିତ ୨୦୧୬ ମସିହାରେ ମୋର ଦେଖା ହୋଇ ନାହିଁ । ଶୁଣିଛି ତାଙ୍କ ଦେହ ଖରାପ ଚିକିତ୍ସିତ ହେଉଛନ୍ତି । କିନ୍ତୁ ଦେଖାକରି ପାରି ନାହିଁ । ତାହାହିଁ ଅବଶୋଷ ରହିଗଲା ମୋର । ଯେତେ ଦିନ ଯାଏଁ କୃଷକର ସମସ୍ୟା ଲାଗି ରହିଥିବ ସେତେଦିନ ଯାଏଁ ସାଥୀ ବିଶ୍ୱନାଥ ସାହୁ ହିଁ ସାଥୀ ମାନଙ୍କକର ସ୍ମରଣୀୟ ହୋଇ ରହିଥିବେ ।

# ରାଜାଙ୍କ ପୁଅ ମନ୍ତ୍ରୀ
# ଶ୍ରୀଯୁକ୍ତ ବିଶ୍ୱନାଥ ସାହୁଙ୍କ ସ୍ମୃତିରେ ......

ତୁଷାରକାନ୍ତ

ବିଶିଷ୍ଟ ସାମ୍ୟବାଦୀ ନେତା, କୃଷକ ଆନ୍ଦୋଳନରେ କାଣ୍ଡାରୀ ସର୍ଗତ ବିଶ୍ୱନାଥ ସାହୁଙ୍କୁ ଥରେ ତାଙ୍କ ବୟସ ବାବଦରେ ପଚାରନ୍ତେ ସେ ତାଙ୍କ ଡାଏରୀ କାଢ଼ି ଦେଖେଇ ଦେଇଥିଲେ, ଯେଉଁଥିରେ ଲେଖାଥିଲା । ମୋ ଜନ୍ମ ତାରିଖ - ତା: ୧୨.୦୭.୧୯୨୫ରିଖ, ଅର୍ଥାତ ସେ ଜନ୍ମଗ୍ରହଣ କରିଥିଲେ ୧୯୨୫ ମସିହା ଜୁଲାଇମାସ ୧୨ ତାରିଖରେ । ସେହି ୧୯୨୫ ମସିହା ଡିସେମ୍ବର ମାସ ୨୫ ତାରିରେ ଗଠିତ ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ଆଜୀବନ ସଦସ୍ୟ, ନେତା, କୃଷକ ଆନ୍ଦୋଳନର ନେତା, ୨ ଥର ବିଧାୟକ ଥାଇ ଗତ ୧୮ ତାରିଖରେ (ତା: ୧୮.୦୩.୨୦୧୬ରିଖ) ସେ ଶେଷ ନିଶ୍ୱାସ ତ୍ୟାଗ କରିଛନ୍ତି ।

ତାଙ୍କ ପ୍ରତି ଶ୍ରଦ୍ଧାଞ୍ଜଳି ଅର୍ପଣ କରିବା ଅବସରରେ, ବିପ୍ଳବୀ ବିଶ୍ୱନାଥ ସାହୁ ଏମିତି ଥିଲେ, ଏଇଆ କରିଥିଲେ, ଆଉ ଏଇଆ ବାକି ରହିଗଲା । ଦିଗପ୍ରତି ମୁଁ ମୋତେ ଧ୍ୟାନ ଦେଉ ନାହିଁ । ଯେଉଁ ଚିନ୍ତାଟି ମୋତେ ଘାରୁଛି, ତାହା ହେଉଛି "ରାଜା ବା ଜମିଦାର ପରିବାରର ନ ହେଲେ ବି ୪୦୦ ଭରଣ ବା ୮୦ ଏକର ସଂପତ୍ତି ଥିବା ପରିବାରରେ ଜନ୍ମିତ ବିଶ୍ୱନାଥ ସାହୁ, ନିଜର ପରିବାରର ସଂପତ୍ତିକୁ ନ ବଢେଇ ଗରୀବ ଗୁରୁବାକୁ ତାଙ୍କ ପାଇଁ ଲଢି ଲଢି କାହିଁକି ସେଇ ସଂପତ୍ତିକୁ ମାତ୍ର ୨ ଏକରକୁ ନେଇ ଆସିଲେ ?" ହୁଏତ ସମଗ୍ର ପରିବାରଟି ସାଧୀନତା ସଂଗ୍ରାମରେ ଝାସ ଦେଇଥିବାରୁ, ତାହାର ପ୍ରଭାବ ସର୍ଗତ ସାହୁଙ୍କ ଉପରେ ପଡିପାରିଥାଏ କିନ୍ତୁ ଥିଲାବାଲା ଘରେ ଜନ୍ମ ହୋଇ ସଦାବେଳିଆ ତଥା ସାରା ଜୀବନ ପାଇଁ କମ୍ୟୁନିଷ୍ଟ ହୋଇ ରହିଯିବା, ସେଭଳି ମାନସିକତା ଧାରୀମାନଙ୍କ ପକ୍ଷେ ହିଁ ସମ୍ଭବ ।

ଆଜିର ଭାରତବର୍ଷରେ ହୁଏତ ଏପରି କୌଣସି ରାଜ ପାରିବାର ନ ଥିବେ, ଯେଉଁମାନଙ୍କ ଦାୟାଦମାନେ ସାଂସଦ, ବିଧାୟକ, ମନ୍ତ୍ରୀ ଇତ୍ୟାଦି ପଦବୀରେ ଅଧିଷ୍ଠିତ ନାହାନ୍ତି । ୧୯୪୭ ମସିହା ଅଗଷ୍ଟ ମାସ ୧୫ ତାରିଖରେ ରାତି ଘ.୧୧.୦୫ମିନିଟ ପର୍ଯ୍ୟନ୍ତ ବ୍ରିଟିଶ ସାମ୍ରାଜ୍ୟର ଚାଟୁକାର ଥିବା ବର୍ଗଟି ହଠାତ୍ ଦେଶପ୍ରେମୀ ପାଲଟି ଗଲେ ଓ ସବୁ ମାଡ଼ି ବସିଲେ ଅଥଚ ବ୍ରିଟିଶ ସରକାରଙ୍କୁ ବିରୋଧକରି ହରେଇଥିବା ବ୍ୟକ୍ତି ସମୂହ ଆଜି ଅଲୋଡ଼ା ।

ଏଇ 'ଅଲୋଡା' କଥାଟିର ଚକ୍ଷୁସ୍ୟ ପ୍ରମାଣ ହେଉଛନ୍ତି, ଏବର କେନ୍ଦ୍ରାପଡା ଜିଲ୍ଲା କନିକା ଅଞ୍ଚଳର ମହାନ ସଂଗ୍ରାମୀ ଆନନ୍ଦ ଜେନା, ଯିଏ କନିକା ରାଜାଙ୍କ ଶୋଷଣ ବିରୁଦ୍ଧରେ "ଦୁଃଖିନୀ କନିକା" ବହି ଲେଖିଥିଲେ । ରାଜାଙ୍କ କଥାରେ ବ୍ରିଟିଶ ତାଙ୍କୁ ତଡିପାର କରେଇ ଥିଲେ, ତାଙ୍କ ସଂପତ୍ତି ବାଜ୍ୟାପ୍ତି

କରେଇଥିଲେ, ଯେଉଁଥି ପାଇଁ ତାଙ୍କ ପୁଅ, ପୁଳାଏ ଦାଢି ଛାଡ଼ି କେନ୍ଦ୍ରାପଡା ସହରର ପୁରୁଣାବସ୍ଷ୍ଟାଣ୍ଡରେ ନିକିତି ଟେକି ପରିବା ବିକିବା  ଏଇ ଆଖି ଦେଖିଛି, ଅଥଚ, ସେଇ ରାଜ ପରିବାରର ଦାୟାଦମାନେ ଲୋକ ପ୍ରତିନିଧି, ମନ୍ତ୍ରୀ ହୋଇ ଚାଲିଛନ୍ତି । ସ୍ୱର୍ଗତ ବିଶ୍ୱନାଥ ସାହୁଙ୍କୁ ଶ୍ରଦ୍ଧାଞ୍ଜଳି ଜ୍ଞାପନ କଲାବେଳେ "ଭୁଲ କେଉଁଠି ରହିଗଲା ଓ ସେ ଭୁଲକୁ ସୁଧୁରାଯାଇ ପାରିବାର ସମ୍ଭବନା ଅଛି କି" ଭଳିଆ ପ୍ରଶ୍ନଟିଏ ମନକୁ ଆସି ଯାଉଛି ।

ଯେତେବେଳେ ନିର୍ବାଚିତ ସରକାର ଗୁଡ଼ିକ, ଲୋକମାନଙ୍କ ଖାଦ୍ୟ, ବସ୍ତ୍ର, ବାସଗୃହ, ଶିକ୍ଷା, ସ୍ୱାସ୍ଥ୍ୟ ଆଦି ସମସ୍ୟାର ସମାଧାନ କରିପାରନ୍ତି ନାହିଁ, ସେତେବେଳେ ଦେଶପ୍ରେମ, ଜାତିୟତାବାଦ, ଧର୍ମ, ଜାତି' ଇତ୍ୟାଦିର ଦ୍ୱାହି ଦେଇ ପ୍ରକୃତ ସମସ୍ୟାଗୁ ସାଧାରଣ ଜନତାଙ୍କ ଦୃଷ୍ଟି ଏଡାଇବାକୁ ଚେଷ୍ଟା କରିବା ଯୁଗଯୁଗର ଧାରାଟିଏ । ଅନ୍ୟାନ୍ୟ ଦେଶ ଗୁଡ଼ିକରେ ସାଧାରଣ ଜନତା ସେହି ଚାଲଗୁଡ଼ିକୁ ବୁଝି ପାରି ସେ ବିରୋଧ କରୁଥିବା ସମୟରେ ଆମ ଦେଶଟିରେ ଉଗ୍ର ଦକ୍ଷିଣପନ୍ଥୀ ମାନଙ୍କ କର୍ତ୍ତୃକ ସେହି ସବୁ ସ୍ଲୋଗାନଗୁଡିକ ବିଶେଷ ବିରୋଧରେ ସମ୍ମୁଖୀନ ନ ହେବା, କେବଳ ବାମପନ୍ଥୀ ଆନ୍ଦୋଳନର ଦୁର୍ବଳତା ଯୋଗୁ ବୋଲି କହିବାରେ ମୋଟେ ଦ୍ୱିଧା ଉପୁଜୁ ନାହିଁ, ଯିଏ ଯାହା ଭାବନ୍ତୁ ପଛେ । "ଭାରତମାତା କି ଜୟ" ଯିଏ ନ କହିବେ, ସେମାନେ ଦେଶଦ୍ରୋହୀ, ସମାଜରୁ ବିତାଡିତ ହେବା କଥା ଯେଉଁ ସଂଘ ପରିବାରର ଆଜିର ସ୍ଲୋଗାନ, ସେମାନଙ୍କ କାର୍ଯ୍ୟାଳୟରେ ଅନେକ ଦିନ ଧରି ଜାତୀୟପତାକା ଉତ୍ତୋଳିତ ନ ହେବା ହିଁ ସେମାନଙ୍କର ଅସଲ ଚରିତ୍ରକୁ ପଦାରେ ପକେଇ ଦଏ । ସବୁବେଳେ ବାହୁ ପ୍ରସାରଣ କରି ଜନତାକୁ ସମ୍ବୋଧନ କରୁଥିବା ମାନ୍ୟବର ପ୍ରଧାନମନ୍ତ୍ରୀ, ତାଙ୍କ ସହିତ ମନ୍ତ୍ରୀମଣ୍ଡଳ ଗଢୁଥିବା ଜାମୁ ଓ କାଶ୍ମୀରର ପିଡିପି ନେତ୍ରୀ ମେହେବୁବା ସଫ୍ତିଙ୍କ ମୁହଁରୁ ଶ୍ରୀନଗର ବା ଦିଲ୍ଲୀର ରାଜରାସ୍ତାରେ "ଭାରତମାତା କି ଜୟ" ସ୍ଲୋଗାନ କଦାପି କୁହେଇ ପାରିବେ ନାହିଁ । ବରଂ, ତାଙ୍କ ଉପସ୍ଥିତିରେ, ସ୍ୱ-ଘୋଷିତ ହିନ୍ଦୁ ହୃଦୟର ସମ୍ରାଟ ନିଜେ ସେଇ ସ୍ଲୋଗାନ ଦେବାକୁ ସାହାସ କରି ନ ପାରନ୍ତି ।

ଏବଂ, ଖାସ ସେଇଥି ପାଇଁ ଓ ଜବାହରଲାଲ ନେହେରୁ ବିଶ୍ୱବିଦ୍ୟାଳୟ ଛାତ୍ର ସଂସଦର ସଭାପତି କହ୍ନେୟାକୁମାର କହୁଛନ୍ତି ରାଷ୍ଟ୍ରିୟ ସ୍ୱୟଂ ସଂଘର ଭାରତମାତା ଗୋରବର୍ଣ୍ଣା, ଜର୍ଜେଟ ଶାଢୀ ଓ ସୁନା ମୁକୁଟ ପରିହିତା ଯେତେବେଳେ କି ଶହେ କୋଟିରୁ ଅଧିକ ଗରୀବଙ୍କ ଭାରତମାତା, କୃଷ୍ଣବର୍ଣ୍ଣା, ଚିରାଲୁଗା ପରିହିତା, ଏପରିକି ବେଳେବେଳେ ଆଦିବାସୀ ରମଣୀଙ୍କ ବେଶଭୂଷାରେ ଆଚ୍ଛାଦିତା" ।

"ଔଷଧ ଖାଇଲେ ରୋଗ ଯାଉ ନାହିଁ - ବିଷ ପିଇଲେ ଛାଡୁନି ପରାଣ । ଅପମିଶ୍ରଣ, ଟିକସ ଫାଙ୍କି, ଋଣ ପରିଶୋଧରେ ଠକେଇ ଯେଉଁମାନଙ୍କ ପେଷା, ସେମାନେ କୁହନ୍ତି 'ଦେଶପ୍ରେମ'ର ଆମେ ପ୍ରମାଣ" । ଆଉ, ସେମାନଙ୍କ ଦ୍ୱାରା କିଣା ହୋଇସାରିଥିବା "ମାଲିକଙ୍କ ଗଣମାଧମ"ରେ ସେଇ କଥା ପରିପ୍ରକାଶ କରିବାର ସୁଯୋଗ ନ ଥିବା ପରିପ୍ରେକ୍ଷୀରେ, ସାମାଜିକ ଗଣମାଧମ ବା Social Media ରେ ଆମେ ଯେତେବେଳେ

ସେଇ କଥା ପଘରି ଦେଉଛୁ, ସେତେବେଳେ ଆମକୁ ମା, ଭଉଣୀ, ଝିଅଙ୍କ ନାମରେ ଗାଳି ଶୁଣିବାକୁ ପଡୁଛି । ଆଉ, ଗାଳି କରୁଛନ୍ତି, ନିଜକୁ ଭାରତବର୍ଷର ମହାନ୍ ଐତିହ ରକ୍ଷକ ବୋଲି ଦାବୀ କରୁଥିବା ରକ୍ତ ଅପମିଶ୍ରଣ କାରୀମାନେ ।

ଆଦିବାସୀ, ଦଳିତ, ଗରୀବ ଲୋକମାନଙ୍କ ସ୍ୱାର୍ଥ ଆଜି ବିପଦରେ । ପୃଥିବୀର ୯୯ ଭାଗ ସଂପତ୍ତି ଆଜି ୧ ଭାଗ ପୁଞ୍ଜିପତିଙ୍କ ହାତରେ । ଜନ ଅସନ୍ତୋଷର ସୁଯୋଗ ନେଇ ଧର୍ମ, ଜାତି, ଭାଗ୍ୟ, ଭଗବାନ, ପାରଞ୍ଚର ଦ୍ୱାହି ଦେଇ ଆମେରିକାର ରାଷ୍ଟ୍ରପତି ପ୍ରାର୍ଥୀ ଡୋନାଲ୍ଡ ଟ୍ରମ୍ପଙ୍କଠାରୁ ଆରମ୍ଭକରି ଆମରି ମୋଦିଜୀ ଓ ମିଃ. ଓ ଏସିସି ଇତ୍ୟାଦି ମୌଳବାଦ, ମିଳାମିଶା ପୁଞ୍ଜିବାଦକୁ ପ୍ରୋତ୍ସାହନ ଦେବା ପାଇଁ ବଦ୍ଧ ପରିକର । ବୁନ୍ଦେଲଖଣ୍ଡ, ଜଏସାଲମୋର ଅଞ୍ଚଳର ମହିଳାମାନେ ୧୦/୧୫ କିଲୋମିଟରରୁ ପାଣି ଗରାଏ ମୁଣ୍ଡରେ ବୋହି ଆଣୁଥିବା ବେଳେ "ହେ ପ୍ରଭୁ, ଦଣ୍ଡ ଦେବାର ଥିଲେ ମୋ ସ୍ୱାମୀଙ୍କୁ ପଛେ ନେଇଯାଅ, ପାଣି ଗରାଟି ଯେପରି ପଡିନଯାଏ, ସେଥିପ୍ରତି ଦୟା ରଖିଥିବ, ଖାଲି ପଟେ ରଟିରେ ଲୁଣଟିକେ ଗୋଳିଦେଇ ଖାଇଥିବା ମୋ ପିଲାଟି ଯେପରି ପାଣି ଟୋପେ ବିନା ମରି ନ ଯାଏ, ସେହି ଦୟାଟି ରଖିଥିବ" ଭଳି ପ୍ରାର୍ଥନା କରୁଥିବା ବେଳେ ପାରଦୀପ ତୈଳ ବିଶୋଧନାଗାର ଓ ବିଜୁ ଜନ୍ମ ଶତବାର୍ଷିକୀ ଉତ୍ସବ ପାଳନ ପାଇଁ ଶହ ଶହ କୋଟି ଟଙ୍କାର ଅପବ୍ୟୟ, ଶ୍ରୀ ବିଶ୍ୱନାଥ ସାହୁଙ୍କ ଜୀବନଭରା ତ୍ୟାଗକୁ ଫିକା ପକେଇ ଦେଉଛି ।

ଗାନ୍ଧିଜୀଙ୍କ ପ୍ରତିମୂର୍ତ୍ତୀ ସ୍ଥାନରେ ଗଡସେଙ୍କ ପ୍ରତିମୂର୍ତ୍ତୀ ଶୋଭା ପାଇବାର ପ୍ରଚେଷ୍ଟା ଆଜି ସଫଳ ହେବାକୁ ଯାଉଛି ବୋଲି ମାନିବାରେ ଦ୍ୱିଧା ନାହିଁ । ସବୁ ଜମି କର୍ପୋରେଟମାନେ ନେଇଯିବେ, ଏଭଳି ଏକ ବାସ୍ତବିକତାରେ ବାମପନ୍ଥୀ, ପ୍ରକୃତ ଗଣତାନ୍ତ୍ରିକ, ଗାନ୍ଧିବାଦୀ, ଲୋହିଆବାଦୀ, ସର୍ବୋଦୟୀମାନେ, ଦେଶର ଏ ଘୋର ବିପଦ ସମୟରେ ଏକାଠି ହୋଇ ଶ୍ରୀ ବିଶ୍ୱନାଥ ସାହୁ ଓ ସେହି ଭଳି ହଜାର ହଜାର ତ୍ୟାଗୀଙ୍କ ସଂଗ୍ରାମକୁ ଆଗକୁ ବଢେଇ ନେବେ କି ନାହିଁ, ତାହା ଦେଖିବାକୁ ବାକି ରହିଲା । ଶ୍ରୀଯୁକ୍ତ ସାହୁଙ୍କ ପ୍ରତି ଲାଲ ସଲାମ'ଟିଏ ଜଣେଇବା ବ୍ୟତିରକେ ମୋ ପାଖରେ ଆଉ କିଛି ନାହିଁ ।

# କୋରାପୁଟ ଜିଲ୍ଲା ସହ ବିଶ୍ୱନାଥ ବାବୁଙ୍କ ଅନ୍ତରଙ୍ଗ ସମ୍ପର୍କ

ପ୍ରମୋଦ କୁମାର ମହନ୍ତି

୧୯୫୮ ମସିହାରେ ଗଞ୍ଜାମ ଜିଲ୍ଲାର ଭଞ୍ଜନଗରଠାରେ କୃଷକ ସଭାର ରାଜ୍ୟ ସମ୍ମିଳନୀ ହେଉଥାଏ । ସାଥୀ ସେମନାଥ ନାୟକଙ୍କ ଚିଠି ପାଇ ସମ୍ମଳନୀରେ ସହଯୋଗ କରିବା ପାଇଁ ମୁଁ ଜୟପୁରରୁ ଯାଇଥାଏ । ମହାନ୍ ନାରୀନେତ୍ରୀ ତଥା ସାଂସଦ କମ୍ରେଡ୍ ଗୀତା ମୁଖାର୍ଜୀ ଖୋଲା ଅଧିବେଶନରେ ଯୋଗ ଦେବା କାର୍ଯ୍ୟକ୍ରମ ଥିଲା । ବିଶ୍ୱନାଥ ବାବୁ ନେତୃତ୍ୱ ନେଇଥାନ୍ତି । ସମ୍ମିଳନୀର ଗୋଟିଏ ଦିନ ପୂର୍ବରୁ ହଠାତ୍ ମୁଁ ଶ୍ୱାସରୋଗରେ ଆକ୍ରାନ୍ତ ହୋଇଗଲି । ରାତି ୧୦ଟାରେ ମୋତେ ହସ୍ପିଟାଲ୍ ନିଆଗଲ । ସାଥୀ ସେମନାଥ ନାୟକ, ବୈଦ୍ୟନାଥ ସାହୁ, ରମେଶ ପଣ୍ଡା ସମସ୍ତେ ମୋର ଯତ୍ନ ନେଉଥାନ୍ତି । ବିଶ୍ୱନାଥ ବାବୁ ପହଞ୍ଚିଗଲେ । ଡ଼ାକ୍ତରବାବୁଙ୍କୁ ଭଦ୍ର ନିବେଦନ, ଆମ କମ୍ରେଡ୍‌ଙ୍କୁ ଦେଖ । ଏତେ ବ୍ୟସ୍ତ ଭିତରେ ମଧ୍ୟ ସେ ସବୁ ଖବର ରଖୁଥିଲେ । ସାଥୀ ସୋମନାଥ ନାୟକଙ୍କୁ କହିଲେ ଜଣେ ସାଥୀଙ୍କୁ ବାରବାର ୟାଙ୍କ ପାଖରେ ରଖ । ସମ୍ମିଳନୀର ତୃତୀୟ ଦିନ ମୋତେ ଭଲ ଲାଗିବାରୁ ମୁଁ ଭଞ୍ଜ କଳାପରିଷଦ ସମ୍ମିଳନୀ ସ୍ଥଳକୁ ଗଲି । ସେଠାରେ ପରିଚୟ ପତ୍ର ସଜାଡ଼ିବା କାମ ଦୁଇଜଣ ସାଥୀ କରୁଥିଲେ । ମୁଁ ସହଯୋଗ କରିବାରୁ ଜଣେ ସାଥୀ ସେଠାରୁ ଚାଲି ଯାଇଥାନ୍ତି । ହଠାତ୍ ବିଶ୍ୱନାଥ ବାବୁ ଆସି ପାଟି କଲେ - ଏ କାମ କାହାକୁ ଦିଆଯାଇଥିଲା ? ସେ କାହିଁ ? କିଛି ଶୃଙ୍ଖଳା ନାହିଁ, ତୁମକୁ ଏ କାମ କିଏ ଦେଲା ? ଯାହାର କାମ ସିଏ କରିବ । ପାଟିତୁଣ୍ଡ ଶୁଣି ସୋମନାଥ ବାବୁ ଆସି ବୁଝାଇ କହିଲେ ଏ ହେଉଛନ୍ତି ଆମ କମ୍ରେଡ୍, କୋରାପୁଟରେ ରହୁଛନ୍ତି । ଆପଣଙ୍କ ହାଇସ୍କୁଲରେ ଶିକ୍ଷକ ଥିଲେ । ସମ୍ମିଳନୀରେ ସହଯୋଗ କରିବା ପାଇଁ ଆସିଛନ୍ତି । ବାସ୍ ଏତିକିରେ ସେ ମୋର ଜୟପୁର ଠିକଣା, ବସ୍‌ଷ୍ଟାଣ୍ଡ ଠାରୁ କେତେ ଦୂର, ସବୁ ବୁଝିନେଲେ । କିଛିଦିନ ପରେ ଖଣ୍ଡେ ପୋଷ୍ଟକାର୍ଡ଼ ପାଇ ଜାଣିଲି ବିଶ୍ୱନାଥ ବାବୁ ଆସୁଛନ୍ତି । ଜୟପୁରରେ ରହି ସେଠାରୁ ମାଲକାନଗିରି ଉପକଣ୍ଠ ବନ୍ଧଗୁଡ଼ା ଗାଁରେ ଆଦିବାସୀ ଚାଷୀ ସଭାରେ ଯୋଗଦେବେ । ପ୍ରଥମ କରି ବିଶ୍ୱନାଥ ବାବୁଙ୍କ ସହ ମାଲକାନଗିରି ଅଭିମୁଖେ ବାହାରିଲି । ସେଠାରେ କମ୍ୟୁନିଷ୍ଟ ପାର୍ଟିର ଜିଲ୍ଲା ନେତାମାନଙ୍କ ସହ ସାକ୍ଷାତ ହେଲା । ବାଜାବାଜଣା କରି ଆଦିବାସୀ ମହିଳା, ପୁରୁଷ ନୃତ୍ୟର ତାଳେ ତାଳେ ତାଙ୍କୁ ପାଛୋଟି ନେଉଥାନ୍ତି । ତାହା ଥିଲା ଜମି ଦଖଲ ଆନ୍ଦୋଳନର ଏକ ପର୍ବ । ସେଠାରେ ସାଥୀ ରାମଚନ୍ଦ୍ର ପଣ୍ଡା, କାଳୀ ତ୍ରିପାଠୀ, ରାମକୃଷ୍ଣ ପୂଜାରୀ, ହଳଧର ପୂଜାରୀ ପ୍ରମୁଖ ଜିଲ୍ଲା ନେତାମାନଙ୍କ ସହ ସାକ୍ଷାତ ହେଲା । ତା ପରେ ପରେ ମାଲକାନଗିରି, କୋରାପୁଟ ଓ ନବରଙ୍ଗପୁରର ପ୍ରତ୍ୟେକ ପାର୍ଟି କାମରେ ମୁଁ ତାଙ୍କର ସହଚର । ଗଣଆନ୍ଦୋଳନ ଗଢି ତୋଳିବାରେ ସବୁବେଳେ ପରାମର୍ଶ ଦେଉଥାନ୍ତି । କୋରାପୁଟ, ମାଲକାନଗିରିର ଅଗମ୍ୟ ଜଙ୍ଗଲ ରାସ୍ତାରେ ଚାଲି ଚାଲି ଯାଇ ସଭା କରିଛୁ । ବିଶ୍ୱନାଥ ବାବୁଙ୍କ ସହ ପାର୍ଟି କାମ କରିବାର ଫଳ ହେଲା

୧୯୮୭ ମସିହାରୁ ୧୯୯୨ ପର୍ଯ୍ୟନ୍ତ ଯେତେବେଳେ ଜୟପୁର କାଗଜକଳ ବନ୍ଦ ହୋଇଗଲା ମୁଁ ୟୁନିୟନର ଦାୟିତ୍ୱ ନେଇ ନିରନ୍ତର ଆନ୍ଦୋଳନ ଜାରି ରଖିଲି । କେବଳ କମ୍ୟୁନିଷ୍ଟ ପାର୍ଟିର ଆଦିବାସୀ, ହରିଜନ, ଗରୀବ ସାଥୀ ଓ ଅନେକ ଶୁଭାକାଂକ୍ଷୀଙ୍କ ସାହାର୍ଯ୍ୟ ପାଇଁ । ବିଶ୍ୱନାଥ ବାବୁ ପରିବାର ଭିତରେ ମିଶିଥାଆନ୍ତି । ସତେ ଯେପରି ପରିବାରର ସେ ଜଣେ ସଦସ୍ୟ । ସେ ଯେକୌଣସି ଜାତି, ଧର୍ମର ପରିବାର ହେଉ । ୨୦୦୫ ମସିହା ନଭେମ୍ବର ୨୪ ରେ ବିଶ୍ୱନାଥ ବାବୁଙ୍କ ପ୍ରେରଣାରେ ଏକ ନୂଆ ଆହ୍ୱାନ - ଗିରିଜନ ଗର୍ଜନ ସମାବେଶ ଜୟପୁରଠାରେ ହେଉଥାଏ । ଗତ ୨୫ ରୁ ୩୦ ବର୍ଷ ଭିତରେ ଏତେ ବିଶାଳ ସମାବେଶ ଅବିଭକ୍ତ କୋରାପୁଟ ଜିଲ୍ଲାରେ ହୋଇନାହିଁ । ଏହି କାର୍ଯ୍ୟକ୍ରମ ପାଇଁ ସାଥୀ ଆଶିଷ କାନୁନଗୋ ମଧ୍ୟ ଆସିଥାନ୍ତି । ଉଭୟଙ୍କ ପାଇଁ ହୋଟେଲ୍‌ରେ ରହିବା ବନ୍ଦୋବସ୍ତ କରାଯାଇଥାଏ ।

ସଭାପରେ ବିଶ୍ୱନାଥ ବାବୁ ଫୋନ୍ କରି ମୋ ସ୍ତ୍ରୀକୁ କହୁଥାନ୍ତି ହଇଲୋ ମା ମୋତେ ପର କରିଦେଲୁ, ହୋଟେଲ୍‌ରେ ରଖିଦେଲୁ । ସାଙ୍ଗେ ସାଙ୍ଗେ ମୋ ସ୍ତ୍ରୀଙ୍କ ତାଗିଦ ବିଶ୍ୱନାଥ ବାବୁଙ୍କୁ ଘରକୁ ନେଇ ଆସ । ଅତି ସରଳ ନିଜର ମଣିଷ ଭଳି କହନ୍ତି ମୋର ଜୟପୁରରେ ବହୁ ନିକଟ ସମ୍ପର୍କୀୟ ଅଛନ୍ତି କିନ୍ତୁ ଆତ୍ମୀୟତା ଜଣେ କମ୍ରେଡ଼ ପାଖରେ ଯାହା ମିଳିବ ସେଠି ମିଳିବ ନାହିଁ । ବିଶ୍ୱନାଥ ବାବୁଙ୍କ ନେତୃତ୍ୱରେ ପାର୍ଟି ସଙ୍ଗଠନ କାର୍ଯ୍ୟ କରିଛୁ । କୋରାପୁଟ ଜିଲ୍ଲା ପାଇଁ ଗର୍ବ ହେଲା ୨୦୧୫ ନଭେମ୍ବର ୧୪,୧୫,୧୬ ତିନିଦିନ ପାର୍ଟିର ରାଜ୍ୟ ପରିଷଦ ସଭ୍ୟଙ୍କ କର୍ମଶାଳା ସୁଚାରୁ ରୂପେ ତୁଲାଇବା ଯେଉଁଥିରେ କି ଜାତୀୟ ସ୍ତରୀୟ ନେତା କମ୍ରେଡ଼ ଡ଼ି.ରାଜା, କମ୍ରେଡ଼୍ କେ. ନାରାୟଣା, କମ୍ରେଡ଼୍ ଅନୀଲ ରାଜୀମ୍ ୱାଲେ ପ୍ରମୁଖ ଯୋଗ ଦେଇଥିଲେ । ଅବଶୋଷ ରହିଗଲା ବିଶ୍ୱନାଥ ବାବୁ ଉପସ୍ଥିତ ହୋଇ ପାରିଲେ ନାହିଁ । ଫୋନରେ କଥାହେଲି, ଅତି ଗର୍ବର ସହ ଶର୍ଯ୍ୟାଶାୟୀ ହୋଇ ମଧ୍ୟ କହୁଥାନ୍ତି କୋରାପୁଟର ନାଁ ରଖିବ । ସମସ୍ତଙ୍କୁ ଭଲ ଆତିଥ୍ୟ ଦେବ । ସାଥୀ ଯୁଧିଷ୍ଠିର, ରାମକୃଷ୍ଣ, ଚନ୍ଦ୍ର ମୁଦୁଲି, ବଳରାମ ସମସ୍ତେ ମିଶି କାମ କର । କଷ୍ଟ ତ ହେବ, କିନ୍ତୁ ସଫଳ ହେବ । ମୋର ଶୁଭେଚ୍ଛା ରହିଛି, କିନ୍ତୁ ଦୁଃଖିତ ଯାଇ ପାରୁନାହିଁ । ସେବେଠାରୁ ସେ ଉଠିବାକୁ ଚେଷ୍ଟା କରିଛନ୍ତି କିନ୍ତୁ ଉଠି ପାରିଲେ ନାହିଁ । ସେ ଆଜି ନାହାନ୍ତି । କୋରାପୁଟ ଜିଲ୍ଲା କମିଟି ତାଙ୍କ ପ୍ରତି ଶ୍ରଦ୍ଧାଞ୍ଜଳି ଜଣାଉଛୁ ।

# ମାନବବାଦୀ ରତ୍ନ

**ସିଏଚ. ଜନାର୍ଦ୍ଦନ ରେଡ୍ଡି**

ମାର୍ଚ୍ଚ ୧୮ ତାରିଖ ରାତ୍ର ୧୧ଟା ୨୦ ମିନିଟରେ ବଡ଼କଶସ୍ଥଳୀ ସ୍ଥିତ ନିଜ ବାସ ଭବନରେ ଓଡ଼ିଶାର କୃଷକ ଆନ୍ଦୋଳନର ସାରଥୀ ତଥା ବରିଷ୍ଠ କମ୍ୟୁନିଷ୍ଟ ନେତା ଏବଂ ପୂର୍ବତନ ବିଧାୟକ ସମ୍ମାନୀୟ ସାଥୀ ବିଶ୍ୱନାଥ ସାହୁଙ୍କ ବିୟୋଗ ଓଡ଼ିଶାର ଜନସାଧାରଣଙ୍କ ମଧ୍ୟରେ ବିଷାଦର ଛାୟା ଖେଳାଇ ଦେଇଛି ।

କୁହାଯାଏ ମୃତ୍ୟୁ ହିଁ ସଂସାରର ଏକ ମାତ୍ର ସତ୍ୟ । ଏହି ଚରମ ସତ୍ୟ କାହାକୁ ଶୀତଳ ଆଲିଙ୍ଗନ କରିଥାଏ ତ ଆଉ କିଏ ମରି ସୁଦ୍ଧା ମୃତ୍ୟୁ ଉପରେ ବିଜୟ ଲାଭ କରିଛି ବୋଲି ନିଜ କର୍ମରେ ତାହା ପ୍ରମାଣସିଦ୍ଧ କରେ । ଓଡ଼ିଶାର ପ୍ରାତଃ ସ୍ମରଣୀୟ ଜନ ନେତାଙ୍କ ମଧ୍ୟରେ ପ୍ରୟାତ ସାଥୀ ବିଶ୍ୱନାଥ ସାହୁଙ୍କ ନାମ ବେଶ୍ ଉଲ୍ଲେଖନୀୟ । ବାସ୍ତବରେ ସେ ଥିଲେ ଜଣେ ମାନବବାଦୀ 'ରତ୍ନ' ।

ଆଜିକାଲି ନେତାର ସଂଜ୍ଞା ବଦଳି ଯାଇଛି । ଯେତେ ସବୁ ଅନୈତିକ କାର୍ଯ୍ୟ ହିଁ ନୀତି ହୋଇଯାଇଛି । ରାଜନୀତି ଆଜି ବ୍ୟକ୍ତି ସର୍ବସ୍ୱ ଏବଂ ସ୍ୱାର୍ଥ ସର୍ବସ୍ୱ ହୋଇ ପଡ଼ିଛି । ଯେଉଁମାନେ ସମାଜ ବିକାଶର ଧାରା ସଂପର୍କରେ ଅଜ୍ଞ, ଯେଉଁମାନଙ୍କର ସାମାଜିକ ଦାୟିତ୍ୱବୋଧତା ନାହିଁ, କ୍ଷଣିକ ସ୍ୱାର୍ଥ ପାଇଁ ସେମାନେ ରାଜନୀତିକୁ ବ୍ୟବହାର କରିଥାନ୍ତି । କିନ୍ତୁ ସାଥି ବିଶ୍ୱନାଥ ସାହୁ ସେ ସବୁରୁ ଉର୍ଦ୍ଧ୍ୱରେ ।

ସମାଜକୁ ଅଗ୍ରଗତି ପଥରେ ନେବାକୁ ହେଲେ ଶିକ୍ଷାର ପ୍ରସାର ଆବଶ୍ୟକ ଏ କଥାକୁ ହୃଦୟଙ୍ଗମ କରି ଅନେକ ଶିକ୍ଷାନୁଷ୍ଠାନ ପ୍ରତିଷ୍ଠା କରିବାରେ ତାଙ୍କର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଅଟେ ।

ନିରକ୍ଷରତା ନ ରହୁ ବୋଲି ଭାବି ଯେଉଁ ନିଷ୍ଠାପରତାର ଉଦ୍ୟମ ଏବଂ ଆନ୍ତରିକ ଚେଷ୍ଟା ଫଳରେ ସେ ଚମାଖଣ୍ଡି ଅଞ୍ଚଳରେ ଶିକ୍ଷାନୁଷ୍ଠାନ ଗଢ଼ିଛନ୍ତି, ସେହି ଶିକ୍ଷାନୁଷ୍ଠାନ ଆଦର୍ଶ ଶିକ୍ଷାନୁଷ୍ଠାନଭାବେ ପ୍ରତିଷ୍ଠା କରିପାରିଥିଲେ । ବିଶ୍ୱନାଥ ବାବୁ ଶିକ୍ଷାର ବିକାଶ ସହ କୃଷକର ବିକାଶ ଚାହୁଁଥିଲେ ଏଣୁ ସଦାସର୍ବଦା ସରକାରଙ୍କ ପାଖରେ କୃଷକ ମାନଙ୍କୁ ୬୦ ବର୍ଷ ହେଲେ ସରକାରୀ ପେନସନ ଲାଗୁ କରିବା ପାଇଁ ଦାବୀ କରୁଥିଲେ ।

ତାଙ୍କର ଆଡମ୍ବରହୀନ ଜୀବନ, ଆମାୟିକ ସ୍ନେହ, ଦେଶପ୍ରେମୀ ମନୋଭାବ, ନିଷ୍ଠାପର କାର୍ଯ୍ୟ ଓ ଆତ୍ମିୟତା ଜନ ସାଧାରଣଙ୍କୁ ବିଶେଷ ଆକୃଷ୍ଟ କରିଥିଲା । ସେହି ମହାନ ଦେଶପ୍ରେମୀ ନିଷ୍ଠାବାନ ଆତ୍ମୀୟ କମ୍ୟୁନିଷ୍ଟ ଜୀବନର ଅବସାନ ଘଟିଲା । ଯାହା ଫଳରେ ସାରା ଓଡ଼ିଶା ତଥା ଗଂଜାମ ଜିଲ୍ଲାର ଏକ ମହାନ ବ୍ୟକ୍ତି ଚିରଦିନ ପାଇଁ ଏ ଧରାପୃଷ୍ଠରୁ ଅସ୍ତମିତ ହୋଇଗଲେ । ଯାହାଙ୍କର ଆଉ କେବେ ଫେରିବାର ନାହିଁ । ତାଙ୍କର ଅଭୁଲା ସ୍ମୃତି ଆମ ସମସ୍ତଙ୍କୁ ସର୍ବଦା ପେରଣା ଦେଉଥିବ ସଂଗ୍ରାମ ପଥରେ ଆଗେଇଯିବା ପାଇଁ । ସେହି ପ୍ରୟାତ ସାଥିଙ୍କୁ ମୋର ସଶ୍ରଦ୍ଧ ପ୍ରଣାମ । ଲାଲ ସଲାମ୍ ।

*ଚମାଖଣ୍ଡି ଆଞ୍ଚଳିକ ସହ ସଂପାଦକ*
*ଭାରତୀୟ କମ୍ୟୁନିଷ୍ଟ ପାର୍ଟି*

# A TRIBUTE

**Gobardhan Pujari, M.A,, LL.M.**

At about 8 a.m. of 19th March Sadanand Sahu, president, All odisha youth Federation informed me the passing away of com. Biswanath Sahu. I got Perplexed, stunned and could not believe. Com Biswanath sahu was ailing for some time, but nobody was expecting that he will leave all of us so soon. He had desired that the state conference of Indian Society for cultural co-operatio & Friendship should be held at chhatrapur. The state committee respected his wish and we had the State conference at chhatrapur on 7th and ' 8th of November, 2015, we were informed that Biswanath Babu is not keeping well and it may not be possible for him to attend the conference. To our pleasant surprise he not only graced the function as a member of the Presidium but also blessed the conference and actively participated in the deliberation' His participation defied age and above all displayed what a commitment means to a communist. His wise words still vibrate in our ears. That was the last occasion I had met the great pillar of Friendship movement and shared a dias with him. On his passing away, the Friendship movement lost a veteran who had worked for the cause of friendship on people to people basis throughout the world.

Com. Sahu was a veteran peasant leader. He had led struggles of presents for their rights and had worked for land reforms in the state. His deliberation in the legislative Assembly reflects his commitment for peasants.

Com Sahu's contribution for the welfare of the lawyers of the state is unforgettable. The All Odisha Lawyers' Association had its rebirth at Berhampur conference held on 28th & 29th December, 1980. Social security for lawyers particularly the young lawyers was one of the important issues figured in the deliberation in the conference. Accordingly a resolution was adopted to urge upon the state Govt. to enact a raw. Memorandum was presented to the state Govt' But unfortunately the Govt. had lukewarm attitude to the demand' The All odisha Lawyers' conference constituted a /committee consisting of sri Bipin Bihari Ratho, Sri Sarat chandra Mohap atra and Sri Basanta Kumar Panigrahi who drafted a bill and was circulated amongst lawyers of the State. After the feedback from different

Bar Associations and individual lawyers the bill was finalized. Advocates Welfare Fund Bill, 1981 was moved in odisha Assembly by com. Biswanath Sahu, who was a member of the Assembly representing chhatrapur constituency. while piloting the bill com. Sahu told, I am not an advocate, but I am aware of the problems faced by lawyers and I move the bill "It was a historic moment. Although the bill could not be passed as the Govt' did not accept, the ball started rolling and ultimately the lawyers of the state, has a welfare legislation. The bill moved by com. sahu had provision for matching grant of the Govt., but till now the State has not accepted this proposal. on passing away of Com, Biswanath Sahu, the 'lawyers of the state lost a well-wisher who was not a lawyer but had laid; foundation for the welfare measures of the lawyers. The best tribute to com. sahu will be, if the State Govt. amend the law and provide matching grant to the Fund as provided in the bill moved by him. -



~ ଭଗବତୀ ଭବନରେ ସାଥୀଙ୍କ ପ୍ରତି ଶେଷ ସମ୍ମାନ